# ORIYA
## UPPER PRIMARY
# LITERATURE BOOK

## ଓଡ଼ିଆ ଉଚ୍ଚ ପ୍ରାଥମିକ ସାହିତ୍ୟ ମଞ୍ଜରୀ ।

ଶ୍ରୀ ମଧୁସୂଦନ ରାଓ ଓ ଶ୍ରୀମତୀ ଅବନ୍ତୀ ଦେବୀ କର୍ତ୍ତୃକ ପ୍ରଣୀତ ।



MACMILLAN & CO., LIMITED
CALCUTTA, BOMBAY AND LONDON.

PRINTED AT THE ORISSA MISSION PRESS CUTTACK.

# ବିଜ୍ଞାପନ ।

ଏହି ପୁସ୍ତକ ମଧ୍ୟରେ, ଯେଉଁ ଗଦ୍ୟ-ପ୍ରବନ୍ଧ ଓ କବିତା-ଗୁଡ଼ିକ ସନ୍ନିବେଶିତ ହୋଇଅଛି, ସେଥି ମଧ୍ୟରୁ କବିତା-ଗୁଡ଼ିକ ମୋ-ରଚିତ 'ଛନ୍ଦଃମାଳା'ରୁ ଗୃହୀତ । ଗଦ୍ୟ-ପ୍ରବନ୍ଧ ମଧ୍ୟରୁ ଯେଉଁ ଗୁଡ଼ିକ ନୀତିକଥା, ତାହା 'ହିତୋପଦେଶ', ଈସପ୍‌କଥା ପ୍ରଭୃତି ଗ୍ରନ୍ଥରୁ ସଂକଳୟିତ୍ରୀ ମୋର କନ୍ୟା ଶ୍ରୀମତୀ ଅବନ୍ତୀ କର୍ତ୍ତୃକ ଭାଷାନ୍ତରିତ; ଅନ୍ୟ ପ୍ରବନ୍ଧ-ଗୁଡ଼ିକ ତତ୍-କର୍ତ୍ତୃକ ଲିଖିତ ହୋଇ, ମୋ ଦ୍ୱାରା ସଂଶୋଧିତ ହୋଇଅଛି ।

କଟକ,
୩୦।୧୨।୧୯୦୧

ଶ୍ରୀ ମଧୁସୂଦନ ରାଓ,
ପ୍ରକାଶକ ।

# ସୂଚୀପତ୍ର ।


| ବିଷୟ । | ପୃଷ୍ଠା । |
|---|---|
| ଉଦର ଓ ଅବୟବମାନ ... ... ... | ୧ |
| କୁଠାର ଓ ଜଳଦେବତା ... ... ... | ୨ |
| ବସନ୍ତ ... ... ... ... | ୪ |
| ସମାସ୍ଥଣ ... ... ... ... | ୭ |
| ଗ୍ରୀଷ୍ମ ... ... ... ... | ୧୨ |
| ଶୃଗାଳର ଚଗଲ ... ... ... | ୧୪ |
| ସର୍ ଫିଲିପ୍ ସିଡ୍‌ନି ... ... ... | ୧୫ |
| ବର୍ଷା ... ... ... ... | ୧୭ |
| ବାଳକ ବାଳିକାମାନଙ୍କର କର୍ତ୍ତବ୍ୟ ... ... | ୧୮ |
| ଶରତ ... ... ... ... | ୨୦ |
| ମହାଭାରତ କଥା ... ... ... | ୨୧ |
| ହେମନ୍ତ ... ... ... ... | ୨୫ |
| ଶିଶିର ... ... ... ... | ୨୬ |
| ଚିଲିକା ହ୍ରଦ ... ... ... | ୨୭ |
| ଜନ୍ମ ମରଣ / କଣ୍ଠଧାନ ... ... ... | ୨୯ |
| ଆକାଶ ମଣ୍ଡଳ ... ... ... | ୩୦ |
| ପୃଷ୍ଠଗ ସ୍ତୁତ ... ... ... | ୩୩ |
| ମହାରାଣୀ ଭିକ୍ଟୋରିଆ ... ... ... | ୩୪ |
| ଜନ୍ମଭୂମି ... ... ... ... | ୪୧ |
| ସଫଳ ସ୍ୱପ୍ନ ... ... ... | ୪୩ |
| ଶ୍ରୀରାମ ବନବାସ ... ... ... | ୪୭ |
| ପ୍ରବଚନ ବା ସାଧୁବାକ୍ୟ ... ... ... | ୫୧ |
| ଓଡ଼ିଶାର ପ୍ରାଚୀନ କୀର୍ତ୍ତି ... ... ... | ୫୪ |
| ଧ୍ରୁବ ... ... ... ... | ୫୯ |
| ଚିକାଗା ... ... ... ... | ୭୧ |
| ବାଷ୍ପ ଓ ବିଦ୍ୟୁତର ଅଦ୍ଭୁତ ବଳ ... ... | ୭୭ |
| ବ୍ୟାକରଣ ବିଷୟକ ପାଠ ... ... ... | ୭୯ |

# ସାହିତ୍ୟ ମଞ୍ଜରୀ ।

## ଉଦର ଓ ଅବୟବମାନେ ।

ଏକଦା ହସ୍ତ, ପଦ ପ୍ରଭୃତି ଅବୟବମାନେ ମିଳିତ ହୋଇ କହିଲେ, ଆମ୍ଭେମାନେ ସର୍ବଦା ପରିଶ୍ରମ କରୁଅଛୁଁ; କିନ୍ତୁ ଉଦର କଦାପି ପରିଶ୍ରମ କରେ ନାହିଁ । ସେ ସବୁବେଳେ ନିଶ୍ଚିନ୍ତ ରହିଅଛି; ସେ ସର୍ବଦା ଆଳସ୍ୟରେ କାଳ ହରଣ କରିବ, ଆମ୍ଭେମାନେ କାହିଁକି ତାହାର ପରିଚର୍ଯ୍ୟା କରିବା? ଅତଏବ ଆସ ପ୍ରତିଜ୍ଞା କରିବା ଯେ ଆଜିଠାରୁ ଆମ୍ଭେମାନେ ଆଉ ଉଦରର ସାହାଯ୍ୟ କରିବା ନାହିଁ ।

ଏହି ପରାମର୍ଶ କରି ସେମାନେ ଆଉ ପରିଶ୍ରମ କଲେ ନାହିଁ । ପାଦ ଆଉ ଚଳିଲା ନାହିଁ, ହାତ ଆଉ ତୁଣ୍ଡକୁ ଆହାର ଦେଲା ନାହିଁ, ତୁଣ୍ଡ ଆଉ ଆହାର ଗ୍ରହଣ କଲା ନାହିଁ; ଦନ୍ତ ଆଉ ଭକ୍ଷ୍ୟବସ୍ତୁ ଚର୍ବଣ କଲା ନାହିଁ । ଉଦରକୁ ହିଂସନ କରିବା ପାଇଁ ଏହିପରି ଦୁରଭିସନ୍ଧି କରିବାରୁ, ଶରୀର ଶୁଷ୍କ ହୋଇ ଆସିଲା; ଅବୟବମାନେ ଏପରି ନିସ୍ତେଜ ହୋଇ ପଡ଼ିଲେ ଯେ ଆଉ ସେମାନଙ୍କର ହଳଚଳ ହେବାର ଶକ୍ତି ରହିଲା ନାହିଁ । ସେମାନେ ବୁଝି ପାରିଲେ ଯେ, ଉଦର ପରିଶ୍ରମ ନ କଲେହେଁ, ତାହା ଆହାର ଗ୍ରହଣ କରି ସମସ୍ତଙ୍କୁ ବଳ ଦିଏ । ଅତଏବ ତାହାପାଇଁ ପରିଶ୍ରମ ନ କଲେ, ସମସ୍ତେ ଦୁର୍ବଳ ଓ ନିସ୍ତେଜ ହୋଇ ପଡ଼ିବେ ।

ଏହି କଥାରୁ ଏହି ଉପଦେଶ ମିଳୁଅଛି ଯେ ଗୃହରେ, ବିଦ୍ୟାଳୟରେ, କର୍ମକ୍ଷେତ୍ରରେ ଓ ସମାଜ ମଧ୍ୟରେ ଯେଉଁମାନେ ଏକତ୍ର ଥାନ୍ତି, ସେମାନେ ନିଜ ନିଜ କର୍ମ ନ କଲେ, କାହାରି କୁଶଳ ଓ ମଙ୍ଗଳ ହେବ ନାହିଁ ।

## କୁଠାର ଓ ଜଳଦେବତା ।



ଜଣେ ଦୁଃଖୀଲୋକ କୌଣସି ନଦୀର ତଟରେ ଗୋଟାଏ ବୃକ୍ଷ କାଟୁ-ଥିଲା । ହଠାତ୍ ତାହାର କୁଠାର ଖଣ୍ଡିକ ହାତରୁ ଖସି ଯାଇ ନଦୀର ଗଭୀର ଜଳରେ ପଡ଼ିଗଲା । କୁଠାର ଖଣ୍ଡିକ ଆଉ ମିଳିବ ନାହିଁ ବୋଲି, ଭାବି ଭାବି ସେହି ଦୁଃଖୀ ଉଚ୍ଚସ୍ୱରରେ କ୍ରନ୍ଦନ କରିବାକୁ ଲାଗିଲା । ତାହାର କ୍ରନ୍ଦନ ଶୁଣି ସେହି ନଦୀର ଅଧିଷ୍ଠାତ୍ରୀ ଦେବତାଙ୍କର ଅତିଶୟ ଦୟା ହେଲା । ସେ ତାହା ସମ୍ମୁଖରେ ଉପସ୍ଥିତ ହୋଇ ପଚାରିଲେ ତୁମ୍ଭେ କାହିଁପାଇଁ କ୍ରନ୍ଦନ କରୁ ଅଛ ? ସେ ସମୁଦାୟ କଥା ଜଣାଇଲାରୁ, ଜଳ-ଦେବତା ତତ୍‌କ୍ଷଣାତ୍ ନଦୀରେ ମଗ୍ନ ହେଲେ ଏବଂ ଗୋଟିଏ ସ୍ୱର୍ଣ୍ଣନିର୍ମିତ କୁଠାର ହାତରେ ଧରି, ତାହା ନିକଟକୁ ଆସି ପଚାରିଲେ, ଏଇଟା କଣ

ତୁମ୍ଭର କୁଠାର ? ସେ କହିଲା, ନା, ଏ ମୋର ନୁହେ । ତହୁଁ ସେ ପୁଣି ଜଳରେ ବୁଡ଼ି ଗୋଟିଏ ରଜତନିର୍ମିତ କୁଠାର ହାତରେ ଧରି, ତାହାର ସମ୍ମୁଖରେ ଉପସ୍ଥିତ ହୋଇ ଜିଜ୍ଞାସା କଲେ, ଏଇଟା କଣ୍ ତୁମ୍ଭର କୁଠାର ? ସେ କହିଲା, ନା, ଏ ମଧ୍ୟ ମୋର ନୁହେ । ସେ ପୁନର୍ବାର ଜଳରେ ବୁଡ଼ିଲେ ଏବଂ ତାହାର ଲୌହନିର୍ମିତ କୁଠାର ଖଣ୍ଡିକ ହସ୍ତରେ ଧରି, ତାହାକୁ ପଚାରିଲେ, ଏଇଟା କି ତୁମ୍ଭର କୁଠାର ? ସେ ନିଜର କୁଠାର ଦେଖି ଅତ୍ୟନ୍ତ ଆହ୍ଲାଦିତ ହୋଇ କହିଲା, ହଁ ମହାପ୍ରଭୁ, ଏଇ ମୋର କୁଠାର । ମୁଁ ଅତିଦୁଃଖୀ ; ମୋର ଆଉ ଏ କୁରାଢ଼ିଟି ପାଇବାର ଆଶା ନ ଥିଲା ; କେବଳ ଆପଣଙ୍କ ଦୟାରୁ ପାଇଲି ।

ଜଳଦେବତା, ପ୍ରଥମେ ତାହାର ନିଜର କୁଠାର ଖଣ୍ଡିକ ତାହାର ହସ୍ତରେ ଦେଲେ ; ପରେ ତୁମ୍ଭେ ନିର୍ଲୋଭ, ସତ୍ୟନିଷ୍ଠ ଓ ଧର୍ମପରାୟଣ ; ଏଥିପାଇଁ ମୁଁ ତୁମ୍ଭ ଉପରେ ଅତିଶୟ ସନ୍ତୁଷ୍ଟ ହୋଇଅଛି, ଏହା କହି ତାହାର ସାଧୁତାର ପୁରସ୍କାର ସ୍ୱରୂପ, ସେହି ସ୍ୱର୍ଣ୍ଣନିର୍ମିତ ଓ ରଜତନିର୍ମିତ କୁଠାର ଦୁଇଖଣ୍ଡ ମଧ୍ୟ ତାହାକୁ ଦେଇ ଅନ୍ତର୍ହିତ ହେଲେ । ସେହି ଦୁଃଖୀ-ବ୍ୟକ୍ତି ଅବାକ୍ ହୋଇ କିଛିକ୍ଷଣ ସେହି ସ୍ଥାନରେ ଛିଡ଼ା ହୋଇ ରହିଲା । ଅନନ୍ତର, ଗୃହକୁ ଯାଇ, ପ୍ରତିବେଶିମାନଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇଲା । ସମସ୍ତେ ଶୁଣି ବିସ୍ମୟାପନ୍ନ ହେଲେ ।

ଏହି ଅଦ୍ଭୁତ ବୃତ୍ତାନ୍ତ ଶୁଣି ଜଣେ ବ୍ୟକ୍ତିର ଅତିଶୟ ଲୋଭ ହେଲା । ସେ ତହିଁ ଆରଦିନ ପ୍ରାତଃକାଳରେ କୁଠାର ଖଣ୍ଡିଏ ଧରି ନଦୀତୀରରେ ଉପସ୍ଥିତ ହେଲା ଏବଂ ଗୋଟିଏ ବୃକ୍ଷର ମୂଳରେ ଦୁଇ ତିନି ଚୋଟ ମାରି, ସତେ ଯେମନ୍ତେ ହଠାତ୍ ତା ହାତରୁ ଖସିଗଲା, ଏହିପରି ଛଳ କରି, ତାହାକୁ ଜଳରେ ପକାଇ ଦେଲା ଏବଂ ହାୟ ମୁଁ କି କରିବି ବୋଲି ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲା । ଜଳଦେବତା, ତାହାର ସମ୍ମୁଖରେ ଉପସ୍ଥିତ ହୋଇ ରୋଦନର କାରଣ ପଚାରିଲେ, ମୁଁ ଅତି-

ଦୁଃଖୀ, ମୋର କୁରାଢ଼ିଖଣ୍ଡିକ ହାତରୁ ଖସି ପାଣିରେ ପଡ଼ିଗଲା, ମୁଁ କି କରିବ, ଏହିପରି କହି ସେ ବ୍ୟକ୍ତି ଦୁଃଖ ପ୍ରକାଶ କରିବାକୁ ଲାଗିଲା ।

ଜଳଦେବତା ପୂର୍ବବତ୍ ଜଳରେ ମଗ୍ନ ହୋଇ, ଗୋଟିଏ ସ୍ୱର୍ଣ୍ଣନିର୍ମ୍ମିତ କୁଠାର ହାତରେ ଧରି, ତାହା ନିକଟରେ ଉପସ୍ଥିତ ହେଲେ ଏବଂ ପଚାରିଲେ, ଏଇଟା କଣ ତୁମ୍ଭର କୁଠାର ? ସ୍ୱର୍ଣ୍ଣନିର୍ମ୍ମିତ କୁଠାର ଦେଖି ସେହି ଲୋଭୀ, ଏହି ମୋର କୁଠାର ବୋଲି, ବ୍ୟଗ୍ର ହୋଇ, କୁଠାର ଧରିବାକୁ ଗଲା । ତାହାକୁ ଏପରି ଲୋଭୀ ଓ ମିଥ୍ୟାବାଦୀ ଦେଖି, ଜଳଦେବତା ଅତଶୟ ଅସନ୍ତୁଷ୍ଟ ହେଲେ ଏବଂ କହିଲେ ତୁ ଅତି ଲୋଭୀ, ଓ ମିଥ୍ୟାବାଦୀ ; ତୁ ଏହି କୁଠାର ପାଇବାର ଯୋଗ୍ୟ ପାତ୍ର ନୋହୁ, ଏହି ପ୍ରକାର ଭର୍ତ୍ସନା କରି, ସେହି ସ୍ୱର୍ଣ୍ଣ ନିର୍ମ୍ମିତ କୁଠାର ଖଣ୍ଡି ପାଣିରେ ପକାଇ ଦେଇ, ଜଳ ଦେବତା ଅନ୍ତର୍ହିତ ହେଲେ । ସେ ହତବୁଦ୍ଧି ହୋଇ ନଦୀ-ତଟରେ ବସି ଗାଲରେ ହାତ ଦେଇ ଭାବିବାକୁ ଲାଗିଲା । ଅନନ୍ତର, ମୋର ଯେପରି ଆଚରଣ ତାର ଉପଯୁକ୍ତ ଫଳ ପାଇଲି, ଏହା କହି ବିଷଣ୍ଣ ମନରେ ଗୃହକୁ ଲେଉଟି ଗଲା ।

## ବସନ୍ତ ।

(ସୁର ଚକ୍ରକେଳି)

ଆସଇ ବସନ୍ତ ଶିଶିର-ଅନ୍ତେ
ହସଇ ଧରଣୀ ସୃରୁ କେମନ୍ତେ ।
ସୌନ୍ଦର୍ଯ୍ୟ-ତରଙ୍ଗେ ଭାସଇ ମହୀ
ଭୁବନ ଆନନ୍ଦ କୁହୁଇ କହି ।
ଦକ୍ଷିଣଦିଗରୁ ବହେ ମୃଦୁଳ
ପରିମଳମୟ ମଳୟାନିଳ ।

କୁସୁମେ ମଣ୍ଡିତ ଦ୍ରୁମ ଲତାଏ
ସରୋବରରେ ପଦ୍ମ କି ଶୋଭାପାଏ ।
ବନସ୍ଥଳୀ ପୂର୍ଣ୍ଣ ବିହଙ୍ଗଗୀତେ
ଶ୍ରବଣେ ଆନନ୍ଦ ଉପୁଜେ ଚିତେ ।
ମଧୁମୟ ଋତୁ ମଧୁକାଳରେ
ନବହର୍ଷେ ମତ୍ତ ପ୍ରାଣି-ନିକରେ ।
ଭ୍ରମଇ ଭ୍ରମର ଆନନ୍ଦମନେ
ମଧୁପାନ କରି କୁସୁମବନେ ।
ନବୀନପଲ୍ଲବ ନବ କୁସୁମ
ଧରିଅଛି ଦେହେ ରସାଳଦ୍ରୁମ ।
ଡାଳେ ବସି ପିକ ଆନନ୍ଦଗୀତ
ଗାଇଣ ମଧୁରେ ହରଇ ଚିତ ।
ବନେ କରି-ଯୂଥ କୁରଙ୍ଗକୁଳ
ବସନ୍ତ ଆମୋଦେ ହୋଇ ଆକୁଳ;
ବୁଲନ୍ତି ହରଷେ ପବନମୁଖେ
ପୁଷ୍ପ ପରିମଳ ଆଘ୍ରାଣି ସୁଖେ ।
ସୁନ୍ଦର ପଲ୍ଲବ ପୁଷ୍ପସ୍ତବକେ
ସର୍ବାଙ୍ଗ ମଣ୍ଡିତ ଦେଖ ଅଶୋକେ ।
ହଳଦବସନ୍ତ ତହିଁ ଉପରେ
କରଇ ସଂଗୀତ ମଧୁରସ୍ୱରେ ।
ରକ୍ତବର୍ଣ୍ଣ ରମ୍ୟ ପଲାଶବନ
ଦୂରରୁ ହରଇ ନୟନ ମନ ।
କାମିନୀ କଆଳି ଗୋଲାପ ଫୁଲ ।
ଫୁଟିବାରୁ ଉପବନ ମଞ୍ଜୁଳ ।

ନିର୍ଝରିଣୀ ଝର ଝର ଶବଦେ
ବହିଯାଇ କାନନେ ଶଇଳପଦେ ।
ଜଳ ସ୍ଥଳ ଗିରି ବନ ଆକାଶ
ଚଉଦିଗ କରେ ଶୋଭାପ୍ରକାଶ ।
ଦିବସ ରଜନୀ ପ୍ରଦୋଷ ଉଷା
ସର୍ବେ ପିନ୍ଧିଛନ୍ତି ବସନ୍ତଭୂଷା ।
ଶିଶୁଗଣ ଏବେ ହରଷେ ରତ,
ଫୁଲ-ଉପବନେ ବୁଲନ୍ତି ସତତ,
କୁସୁମ ପରାଗ ମୁଖରେ ବୋଳି,
ଧରି ପ୍ରଜାପତି କୁସୁମ ତୋଳି,
ନାନାରଙ୍ଗେ ଖେଳି ତରୁ ତଳରେ,
କରନ୍ତି ସଙ୍ଗୀତ ଆନନ୍ଦଭରେ ।

## ରାମାୟଣ ।

ଭାରତବର୍ଷରେ ଅଯୋଧ୍ୟା ନାମରେ ଗୋଟିଏ ପ୍ରଦେଶ ଅଛି । ସେଠାରେ ଅତି ପ୍ରାଚୀନକାଳରେ ଦଶରଥ ନାମରେ ଜଣେ ରାଜା ଥିଲେ ; ତାହାଙ୍କର ତିନି ରାଣୀ ଥିଲେ, କୌଶଲ୍ୟା, କେକୟୀ, ସୁମିତ୍ରା । ଜ୍ୟେଷ୍ଠା ରାଣୀ କୌଶଲ୍ୟାଙ୍କର ପୁତ୍ର ରାମଚନ୍ଦ୍ର ; ମଧ୍ୟମା ରାଣୀ କେକୟୀଙ୍କର ପୁତ୍ର ଭରତ ; କନିଷ୍ଠା ରାଣୀ ସୁମିତ୍ରାଙ୍କର ଲକ୍ଷ୍ମଣ ଓ ଶତ୍ରୁଘ୍ନ ନାମରେ ଦୁଇ ପୁତ୍ର ଥିଲେ । ଲକ୍ଷ୍ମଣ ରାମଙ୍କର ଏକାନ୍ତ ଅନୁଗତ ଥିଲେ ଏବଂ ଶତ୍ରୁଘ୍ନ ଭରତଙ୍କର ଅତିଶୟ ଅନୁଗତ ଥିଲେ । ଚାରି ଭାଇଙ୍କ ମଧ୍ୟରେ ଅତ୍ୟନ୍ତ ସ୍ନେହ ଥିଲା ଏବଂ ରାମଙ୍କୁ ସମସ୍ତେ ଅତ୍ୟନ୍ତ ସ୍ନେହ ଓ ଭକ୍ତି କରୁଥିଲେ । ରାଜା ଦଶରଥ କ୍ରମେ ବୃଦ୍ଧ ହୋଇ ପଡ଼ିବାରୁ ସେ ରାମଙ୍କୁ ରାଜ୍ୟ ଦେଇ ଅବସର ଗ୍ରହଣ କରିବା ପାଇଁ ସଂକଳ୍ପ କଲେ । ରାମଙ୍କୁ

ରାଜା କରିବା ପାଇଁ ନାନା ଆୟୋଜନ ହେବାକୁ ଲାଗିଲା । ରାମଙ୍କର ନାନା ସଦ୍ଗୁଣ ଦେଖି ପ୍ରଜାମାନେ ତାଙ୍କ ପ୍ରତି ଅନୁରକ୍ତ ଥିଲେ, ସୁତରାଂ ତାହାଙ୍କର ଅଭିଷେକୋତ୍ସବବାର୍ତ୍ତା ପ୍ରଚାରିତ ହେଲାକ୍ଷଣି ସେମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ଏହି ସମୟରେ ଦଶରଥଙ୍କର ମଧ୍ୟମା ରାଣୀ ମହାବିପଦ ଘଟାଇଲେ । ସେ ପୂର୍ବେ ଏକଦା ପ୍ରାଣପଣ ସେବାଦ୍ୱାରା ଦଶରଥଙ୍କୁ ମୃତ୍ୟୁ ମୁଖରୁ ରକ୍ଷା କରିଥିଲେ ; ସେତେବେଳେ ରାଜା ତାହାଙ୍କ ପ୍ରତି ଅତିଶୟ ସନ୍ତୁଷ୍ଟ ହୋଇ ଦୁଇଟି ବର ଦେବେ ବୋଲି ଅଙ୍ଗୀକାର କରିଥିଲେ । କିନ୍ତୁ କୈକେୟୀ ଆଜି ଯାଏ କୌଣସି ବର ମାଗି ନ ଥିଲେ । ରାମ ରାଜା ହେବେ ଏହି କଥା ଶୁଣି ମନ୍ଥରା ନାମରେ ଜଣେ ଦୁଷ୍ଟା ଦାସୀର ମନ୍ତ୍ରଣାରେ ପଡି କୈକେୟୀ ହଠାତ୍ ଦୁଇଟି ନିଷ୍ଠୁର ବର ମାଗି ବସିଲେ । ଗୋଟିଏ ବର ଏହି ଯେ ଭରତ ରାଜା ହୁଅନ୍ତୁ ଏବଂ ଅପର ବର ଏହି ଯେ ରାମ ଚତୁର୍ଦ୍ଦଶ ବର୍ଷ ନିମିତ୍ତ ବନକୁ ନିର୍ବାସିତ ହୁଅନ୍ତୁ । ଦଶରଥ ଅତ୍ୟନ୍ତ ସତ୍ୟପରାୟଣ ଥିଲେ । ସେ କେବେହେଁ ସତ୍ୟଭଙ୍ଗ କରୁ ନ ଥିଲେ । ସେ ପୂର୍ବେ ଦୁଇଟି ବର ଦେବେ ବୋଲି ଅଙ୍ଗୀକାର କରିଥିଲେ, ବର୍ତ୍ତମାନ ତାହା ଲଙ୍ଘନ କରି ନ ପାରିଲେ ; ସୁତରାଂ ରାମଙ୍କୁ ବନ ଗମନ କରିବାକୁ ହେଲା । ରାଜ୍ୟର ସମସ୍ତ ଲୋକେ ଏହି ସଂବାଦରେ ହାହାକାର କରିବାକୁ ଲାଗିଲେ ଏବଂ ଘରେ ଘରେ କ୍ରନ୍ଦନର ରୋଳ ଉଠିଲା । ପ୍ରିୟତମ ପୁତ୍ର ରାମଙ୍କର ବନବାସକଷ୍ଟ କଥା ଭାଳି ଭାଳି, ରାଜା ଦଶରଥ ଅଚେତନ ହୋଇ କିଛିକାଳ ପରେ ପ୍ରାଣ ତ୍ୟାଗ କଲେ । କିନ୍ତୁ ରାମ ଏପରି ଧୀର ସ୍ୱଭାବ ଓ ଧର୍ମପରାୟଣ ଥିଲେ ଯେ ସେ ଆନନ୍ଦିତ ଚିତ୍ତରେ ପିତୃ-ସତ୍ୟ ପାଳନ କଲେ ।

ପୂର୍ବେ ସେ ମିଥିଳା ରାଜ୍ୟର ଅଧିପତି ଜନକଙ୍କର କନ୍ୟା ପରମ-ସୁନ୍ଦରୀ ସର୍ବଗୁଣାଳଙ୍କୃତା ସୀତାଙ୍କୁ ବିବାହ କରିଥିଲେ । ରାମ ବନକୁ ଯିବେ ଶୁଣି, ସୀତା ଏବଂ ଲକ୍ଷ୍ମଣ ତାହାଙ୍କ ସଙ୍ଗରେ ଯିବାପାଇଁ ପ୍ରାର୍ଥନା

ହେଲେ । ରାମ ବାରମ୍ବାର ବାରଣ କଲେହେଁ, ସେମାନେ ତାଙ୍କ ସଙ୍ଗରେ ବନକୁ ପ୍ରସ୍ଥାନ କଲେ । ଭରତ ଏ ସମୟରେ ମାତୁଳାଳୟରେ ଥିଲେ; ରାମଙ୍କର ବନବାସ ସମ୍ବାଦ ପାଇ, ସେ ଅଯୋଧ୍ୟାକୁ ଆସି ଦେଖିଲେ ଯେ ରାଜ୍ୟର ଶୋକର ଛାୟା ଅଯୋଧ୍ୟାକୁ ଅନ୍ଧକାର-ମୟ କରି ଦେଇଅଛି । ବ୍ୟଥିତ ଚିତ୍ତରେ ଭରତ ରାମଙ୍କୁ ଗୃହକୁ ଲେଉଟାଇ ଆଣିବା ନିମନ୍ତେ ବନକୁ ଗମନ କଲେ ଚିତ୍ରକୂଟ ପର୍ବତରେ ଉପସ୍ଥିତ ହୋଇ ଭରତ ଦେଖିଲେ ଯେ ରାମ ସେଠାରେ ରାଜବେଶ ପରିହାର କରି, ଋଷିକୁମାରମାନଙ୍କ ପରି ହୀନଭାବରେ ଜୀବନ ଯାପନ କରୁଅଛନ୍ତି । ଭରତ ରାମଙ୍କର ଚରଣ ଧରି, ଗୃହକୁ ଲେଉଟିବା ନିମିତ୍ତ ବ୍ୟାକୁଳଭାବରେ ବାରମ୍ବାର ପ୍ରାର୍ଥନା କଲେ । କିନ୍ତୁ ରାମ କୌଣସି ପ୍ରକାରେ ସମ୍ମତ ନ ହୋଇ ପିତାଙ୍କର ଅଙ୍ଗୀକାର ପାଳନ କରିବା ନିମିତ୍ତ ବନରେ ରହିଲେ ଏବଂ ଭରତଙ୍କୁ ନାନାପ୍ରକାରେ ବୁଝାଇ ଅଯୋଧ୍ୟାକୁ ପଠାଇ ଦେଲେ । ନିର୍ଲୋଭ ଓ ନିଃସ୍ୱାର୍ଥ ଭ୍ରାତୃ-ଭକ୍ତ ଭରତ ଅଯୋଧ୍ୟାକୁ ଫେରି ଆସି ରାମଙ୍କର ପାଦୁକାକୁ ସିଂହାସନରେ ସ୍ଥାପନ କରି ରାମଙ୍କର ଦାସ ପ୍ରାୟ ରାଜକାର୍ଯ୍ୟ ନିର୍ବାହ କରିବାକୁ ଲାଗିଲେ, ଏବଂ ରାମଙ୍କ ପରି ରାଜଭୋଗ ପରିତ୍ୟାଗ କରି ବଲ୍କଳ-ବସନ ପରିଧାନ ଓ ଫଳ ମୂଳାହାର କରି ଜୀବନ ଯାପନ କଲେ । ତାହାଙ୍କର ଏହି ପ୍ରକାର ସ୍ୱାର୍ଥତ୍ୟାଗ ଓ ବୈରାଗ୍ୟ ଦେଖି, ସମସ୍ତେ ବିସ୍ମୟାନ୍ୱିତ ହୋଇ, ଧନ୍ୟ ଧନ୍ୟ କହିବାକୁ ଲାଗିଲେ ।

ତଦନନ୍ତର ରାମଚନ୍ଦ୍ର ପଞ୍ଚବଟୀ ବନକୁ ଗମନ କରି ସେଠାରେ ବାସ କଲେ । ରାମ ଓ ସୀତା, ରାଜପୁତ୍ର ଓ ରାଜକନ୍ୟା ହେଲେହେଁ, ସେମାନଙ୍କର ପରସ୍ପର ମଧ୍ୟରେ ଏପରି ସ୍ନେହ ଥିଲା ଯେ ସେମାନେ ବନବାସ-କଷ୍ଟକୁ କଷ୍ଟ ବୋଲି ମଣି ନ ଥିଲେ । ପଞ୍ଚବଟୀରେ କିଛିଦିନ ବାସ କଲା ଉତ୍ତାରୁ ଦିନେ ରାମ ଓ ଲକ୍ଷ୍ମଣ ମୃଗୟାର୍ଥ ବନକୁ ଯାଇଥିବା ସମୟରେ, ଲଙ୍କାର ରାଜା ରାବଣ ଆସି ସୀତାଙ୍କୁ ହରଣ କରି ନେଇଗଲା । ଦୁର୍ମ୍ମତି ରାବଣ

ସୀତାଙ୍କୁ ତାହାର ରାଣୀ କରିବା ନିମନ୍ତେ ପ୍ରଲୋଭନ ଦେଖାଇ ନାନା ପ୍ରକାର ଚେଷ୍ଟା କରିଥିଲା, କିନ୍ତୁ ମହାସତୀ ସୀତା ତାହାର ପ୍ରଲୋଭନରେ ଭୁଲି ନ ଥିଲେ । ତହୁଁ ନିଷ୍ଠୁର ରାବଣ ତାହାଙ୍କୁ ବହୁକଷ୍ଟ ଦେଲା, କିନ୍ତୁ ସୀତା କୌଣସି ପ୍ରକାରେ ତାହାରି ଅନୁଗତା ହେଲେ ନାହିଁ । କେବଳ ରାମଙ୍କୁ ସର୍ବଦା ଧ୍ୟାନ କରି, ସେ ସେହି ଭୀଷଣ ରାକ୍ଷସ–ପୁରୀରେ ଦିନଯାପନ କରୁଥିଲେ ।

ରାମଚନ୍ଦ୍ର ମୃଗୟାରୁ ଫେରି ଆସି, ସୀତାଙ୍କୁ ଦେଖିବାକୁ ନ ପାଇ ଶୋକରେ ଅଧୀର ହୋଇ ନାନା ସ୍ଥାନରେ ତାହାଙ୍କର ଅନୁସନ୍ଧାନ କରିବାକୁ ଲାଗିଲେ । କିନ୍ତୁ ତାହାଙ୍କୁ ନ ପାଇବାରୁ କିଷ୍କିନ୍ଧ୍ୟାର ରାଜା ସୁଗ୍ରୀବଙ୍କ ସଙ୍ଗରେ ମିତ୍ରତା କରି ତାହାଙ୍କର ଅନୁଚରମାନଙ୍କୁ ସୀତାଙ୍କ ଅନୁସନ୍ଧାନାର୍ଥ ଦେଶ ଦେଶାନ୍ତରକୁ ପଠାଇଲେ । ସୁଗ୍ରୀବଙ୍କର ଅନୁଚର ବୀର ହନୁମାନ୍, ଲଙ୍କାଦ୍ୱୀପରେ ସୀତାଙ୍କର ଥିବାର ସମ୍ବାଦ ଆଣି ରାମଙ୍କୁ ପ୍ରଦାନ କଲେ । ସୁଗ୍ରୀବ ଓ ତାହାଙ୍କର ଅନୁଚରମାନଙ୍କୁ ଘେନି, ରାମ ଓ ଲକ୍ଷ୍ମଣ ସେତୁ ଦ୍ୱାରା ସମୁଦ୍ର ପାର ହୋଇ ବୃକ୍ଷ–ହର୍ମ୍ମ୍ୟଶାଳିନୀ ଉପ-ବନ–ଶୋଭିତା ଲଙ୍କାପୁରୀକୁ ଅବରୋଧ କଲେ । ରାମଙ୍କ ସହିତ ରାବଣର ଭୀଷଣ ସମର ହେଲା । ଏହି ରଣରେ ରାବଣର ବିଖ୍ୟାତ ବୀରପୁତ୍ର ଇନ୍ଦ୍ରଜିତ୍ ପ୍ରଭୃତି ମହାବୀରମାନେ ବିନଷ୍ଟ ହେଲେ । ପରିଶେଷରେ ରାବଣ ମଧ୍ୟ ରାମଙ୍କ ଶରରେ ବିନାଶ ପ୍ରାପ୍ତ ହେଲା । ସତୀ ସୀତାଙ୍କର ନୟନବାରି କାଳାନଳ ପ୍ରାୟ ଲଙ୍କାପୁରୀକୁ ଭସ୍ମ କରି ଦେଲା ।

ରାମ ଓ ଲକ୍ଷ୍ମଣ ସୀତାଙ୍କୁ ଘେନି ଅଯୋଧ୍ୟାକୁ ପ୍ରତ୍ୟାଗମନ କଲେ । ସେମାନଙ୍କର ପ୍ରତ୍ୟାଗମନରେ ପୁରବାସୀମାନେ ଆନନ୍ଦୋତ୍ସବ କରିବାକୁ ଲାଗିଲେ । ଭରତ ଓ ଶତ୍ରୁଘ୍ନ ମହାନନ୍ଦରେ ରାମ ସୀତାଙ୍କୁ ଅଭ୍ୟର୍ଥନା କରି ଗୃହକୁ ଘେନିଗଲେ । କୌଶଲ୍ୟା ଓ ସୁମିତ୍ରାଙ୍କର ଚକ୍ଷୁ ଆନନ୍ଦରେ ଅଶ୍ରୁବର୍ଷଣ କରିବାକୁ ଲାଗିଲା । କୈକେୟୀ ରାମଙ୍କ ପ୍ରତି ନିଜର ଦୁର୍ବ୍ୟବହାର ବିଷୟ ସ୍ମରଣ କରି ଲଜ୍ଜିତା ହୋଇ ରହିଥିଲେ । ରାମ ସେ ସମସ୍ତ ବିଷୟ ଭୁଲି

ଯାଇ, ତାହାଙ୍କର ପାଦବନ୍ଦନା କରି ତାହାଙ୍କ ପ୍ରତି ଯଥୋଚିତଭକ୍ତି ପ୍ରକାଶ କଲେ । ରାମ ରାଜ୍ୟଭାର ଗ୍ରହଣ କରି ପ୍ରଜାମାନଙ୍କୁ ପରମସୁଖରେ ପାଳନ କଲେ । ଏହିପରି କିଛୁଦିନ ଗତ ହେଲା ଉତ୍ତାରୁ, ଦିନେ ରାମ ଶୁଣିଲେ ଯେ ସୀତାଦେବୀ ରାବଣ ଗୃହରେ ଥିଲେ ବୋଲି ପ୍ରଜାମାନେ ତାହାଙ୍କର ନିନ୍ଦା କରୁଅଛନ୍ତି । ଏହି କଥା ଶୁଣି ରାମ ଅତ୍ୟନ୍ତ ବ୍ୟଥିତ ହେଲେ । ସେ ଜାଣିଥିଲେ ଯେ ସୀତାଙ୍କର ଚରିତ୍ର ନିଷ୍କଳଙ୍କ ଅଟେ; ତଥାପି ପ୍ରଜାରଞ୍ଜନ କରିବା ରାଜାର ଧର୍ମ ଏହା ବିଚାରି, ସେ ନିଜର ସୁଖଶାନ୍ତି ବିସର୍ଜନ କରି, ସସତ୍ତ୍ୱସୀତାଙ୍କୁ ବର୍ଜନ କଲେ । ଲକ୍ଷ୍ମଣ ଭ୍ରାତାଙ୍କରି ଆଦେଶରେ ସୀତାଙ୍କୁ ସଙ୍ଗରେ ଘେନି ମହର୍ଷି ବାଲ୍ମୀକିଙ୍କ ତପୋବନରେ ରଖି ଆସିଲେ । ମହର୍ଷି, ସୀତାଙ୍କୁ ନିଜ କନ୍ୟାତୁଲ୍ୟ ସ୍ନେହରେ ପାଳନ କଲେ । ବାଲ୍ମୀକିମୁନିଙ୍କର ଆଶ୍ରମରେ ସୀତାଙ୍କର ଦୁଇଟି ଯମଜପୁତ୍ର ଜାତ ହେଲେ । ବାଲ୍ମୀକି ଏହି ଦୁଇ ଶିଶୁଙ୍କୁ କୁଶ ଓ ଲବ ନାମ ଦେଲେ । ସେମାନଙ୍କୁ ଧନୁର୍ବିଦ୍ୟା ଓ ରାଜଧର୍ମ ବିଷୟ ଶିଖାଇ, ସେ ରାମ ଓ ସୀତାଙ୍କ ବିଷୟରେ ରାମାୟଣ ନାମକ ମହାକାବ୍ୟ ରଚନା କରି ସେମାନଙ୍କୁ ତାହା ଗାଇବାକୁ ଶିଖାଇଲେ ।

ତଦନନ୍ତର ରାମଚନ୍ଦ୍ର ଅଶ୍ୱମେଧଯଜ୍ଞର ଅନୁଷ୍ଠାନ କରିବାର ସଂକଳ୍ପ କଲେ । ଧର୍ମପତ୍ନୀ ବିନା ଏହି ଯଜ୍ଞ ସାଧିତ ହୁଏ ନାହିଁ ବୋଲି, ତାହାଙ୍କର ପାରିଷଦମାନେ ଦ୍ୱିତୀୟବାର ବିବାହ କରିବା ନିମିତ୍ତ ବାରମ୍ବାର ଅନୁରୋଧ କରିଥିଲେ । କିନ୍ତୁ ରାମଚନ୍ଦ୍ର ଦ୍ୱିତୀୟ ଦାର-ପରିଗ୍ରହ ନ କରି ସୀତାଙ୍କର ସ୍ୱର୍ଣ୍ଣମୟୀ ମୂର୍ତ୍ତି ଗଠନ କରି ଯଜ୍ଞାନୁଷ୍ଠାନ ଆରମ୍ଭ କଲେ । ଦେଶ ଦେଶାନ୍ତରରୁ ମୁନି ଋଷିମାନେ ଆମନ୍ତ୍ରିତ ହୋଇ ଯଜ୍ଞସ୍ଥାନକୁ ଆଗମନ କଲେ । ମହର୍ଷି ବାଲ୍ମୀକି ମଧ୍ୟ ନିମନ୍ତ୍ରିତ ହୋଇ କୁଶଲବଙ୍କୁ ଘେନି ଯଜ୍ଞସ୍ଥାନକୁ ଆସିଲେ । ବାଲ୍ମୀକିଙ୍କ ଆଦେଶମତେ କୁଶ ଓ ଲବ ଯଜ୍ଞସ୍ଥାନରେ ରାମାୟଣ ଗାନ କରିବାକୁ ଲାଗିଲେ । ସେମାନଙ୍କର ମଧୁର ଗାନ ଶୁଣି ସମସ୍ତେ

ମୋହିତ ହୋଇଗଲେ । ସେମାନଙ୍କର ଆକୃତିରେ ରାମ ସୀତାଙ୍କର ରୂପର ସାଦୃଶ୍ୟ ଦେଖି, ରାମ ଓ ଲକ୍ଷ୍ମଣ ବିସ୍ମିତ ହୋଇ ବାଲ୍ମୀକିଙ୍କୁ ସେମାନଙ୍କର ପରିଚୟ ପଚାରିଲେ । ମହର୍ଷିଙ୍କଠାରୁ ସୀତାଙ୍କର ସମସ୍ତ ସଂବାଦ ପାଇ, ରାମ ସୀତାଙ୍କୁ ଆଣିବା ନିମିତ୍ତ ଆଦେଶ କଲେ । ସୀତା, ରାମଙ୍କର ଆହ୍ୱାନବାର୍ତ୍ତା ଶୁଣି ଆନନ୍ଦିତା ହୋଇ ଯଜ୍ଞସ୍ଥାନକୁ ଆସିଲେ । ବାଲ୍ମୀକି ସୀତାଙ୍କୁ ସଭାମଧ୍ୟକୁ ଘେନି ଗଲେ । ସୀତା ଭକ୍ତିପୂର୍ଣ୍ଣ ଅନ୍ତରରେ ରାମଙ୍କର ଚରଣ ବନ୍ଦନା କରି ଦଣ୍ଡାୟମାନା ରହିଲେ । ତାହାଙ୍କର ଶିରୀଷକୋମଳ ସୁକୁମାର ତନୁ ଚିନ୍ତାରେ ଶୁଷ୍କ ଏବଂ କୃଶ ହୋଇଅଛି ଦେଖି ରାମଙ୍କର ହୃଦୟ ବିଗଳିତ ହେଲା । ବାଲ୍ମୀକି ସଭାମଧ୍ୟରେ ଦଣ୍ଡାୟମାନ ହୋଇ ଗମ୍ଭୀରଭାବରେ କହିଲେ "ସୀତାଦେବୀ ପରମା ସତୀ, ରାମଚନ୍ଦ୍ର ତାହାଙ୍କୁ ପୁନର୍ଗ୍ରହଣ କରିବାକୁ ପ୍ରସ୍ତୁତ ଅଛନ୍ତି । ପୁରବାସିମାନେ ଏଦ୍ବିଷୟରେ ଅନୁମତି ଦିଅନ୍ତୁ" । ବାଲ୍ମୀକିଙ୍କର କଥା ଶୁଣି ସାଧୁବ୍ୟକ୍ତି-ମାନେ 'ତଥାସ୍ତୁ' ବୋଲି କହିଲେ, କିନ୍ତୁ ଅବିଶ୍ୱାସୀ କୁଟିଳ-ପ୍ରକୃତିର ଲୋକମାନେ କୌଣସି ଉତ୍ତର ଦେଲେ ନାହିଁ । ସୀତାଦେବୀ ଖଳଲୋକ-ଙ୍କର ଅବିଶ୍ୱାସରେ ଅତ୍ୟନ୍ତ ମର୍ମପୀଡ଼ିତା ହୋଇ 'ମା ବସୁଧେ, ମୋତେ ଗ୍ରହଣ କର' ଏତିକି ମାତ୍ର କହି ମୂର୍ଚ୍ଛିତାହୋଇ, ଭୂତଳରେ ବାତାହତ କଦଳୀବୃକ୍ଷ ପ୍ରାୟ ପଡ଼ିଗଲେ ଏବଂ ସହସା ପ୍ରାଣତ୍ୟାଗ କଲେ ।

ଏଥିଉତ୍ତାରେ ଶ୍ରୀରାମ ଘୋର ଦୁଃଖରେ କିଛିକାଳ ସଂସାରରେ ରହି ମାନବଲୀଳା ସମ୍ବରଣ କଲେ ।

## ଗ୍ରୀଷ୍ମ ।

( ରାଗ ବଙ୍ଗଳାଶ୍ରୀ )

କ୍ରମେ ମଧୁଅନ୍ତେ        ଆସିଲ ଜଗତେ
ଦାରୁଣ ନିଦାଘକାଳ ।

ଗ୍ରୀଷ୍ମଋତୁର ପ୍ରାରମ୍ଭେ ବର୍ଷନ୍ତି ତପନ
ପ୍ରଚଣ୍ଡ କିରଣଜାଳ ।
ହୁତାଶନ ସମ ତପନ ତାପରେ
ତପ୍ତ ମହୀକଳେବର ।
ତପ୍ତ ଧୂଳିରାଶି ତପତ ଅନିଳେ
ଉଡ଼ି ଘୋଟଇ ଅମ୍ବର ।
ପରିଶୁଷ୍କ ଏବେ ସରୋବର ଜଳ
ନଦୀଦେହ କୃଶ ଅଛି ।
ଭେକ ମୀନ ଆଦ ଜଳଚର ପ୍ରାଣୀ
ମରନ୍ତି ଲଭି ଦୁର୍ଗତି ।
ଆତପସନ୍ତାପେ ସନ୍ତାପିତ ସର୍ବେ
ପଶୁ ପକ୍ଷୀ ଜୀବକୁଳ ।
ଶୁଷ୍କ କଣ୍ଠ ତାଲୁ ବିକଳ ଅଥୟ
ସରବେ ତୃଷା ଆକୁଳ ।
ନୀରବ ନିଶ୍ଚଳ ବିହଙ୍ଗ ନିକର
ତପତ ତରୁର ଡାଳେ ।
ମୃଗ ବ୍ୟାଘ୍ର ହସ୍ତୀ ମହିଷ ବରାହ
ଲୋଡ଼ନ୍ତି ଜଳ ବ୍ୟାକୁଳେ ।
ବହେ ସ୍ୱେଦବାରି ସର୍ବେ ନର ନାରୀ
ଗ୍ରୀଷ୍ମସନ୍ତାପେ ଅସ୍ଥିର ।
ବିଚଣା ପବନେ କେହି ବା ଚନ୍ଦନେ
ଶୀତଳନ୍ତି ସ୍ୱଶରୀର ।
ନିର୍ଜ୍ଜନ ପ୍ରାନ୍ତରେ ଗ୍ଳେଲନ୍ତି ପଥିକ
ତୃଷା-ବିଭ୍ରାନ୍ତ-ନୟନେ ।

ଦୂରେ ନିରେଖଇ ରମ୍ୟ ମୃଗତୃଷ୍ଣା
ଅତି ଆନନ୍ଦିତ ମନେ ।
ଜଳ ଭ୍ରମରକୁ ଜାଣି ମୀନମାରେ
ଦେଖେ ମୃଗତୃଷ୍ଣା ଜଳ ।
ଧାଆନ୍ତି ପଥିକ ଅଦୃଶ୍ୟ ହୁଅଇ
ପଥିକ ଆଶା ବିଫଳ ।
ପର୍ବତ କାନନେ ମହାଭୟଙ୍କର
ସଞ୍ଚରଇ ଦାବାନଳ ।
ପ୍ରବଳ ବେଗରେ ପୋଡ଼ି ବନଦେଶ
ନାଶଇ ଜୀବ ସକଳ ।
ନିଦାଘ ସମୟ ହେଲେହେଁ ଦାରୁଣ
ଅଟେ ଜଗତର ମିତ୍ର ।
ଜନମାଇ ମେଘ ସାଧେ ପ୍ରାଣିହିତ
ବିଧିବିଧାନ ବିଚିତ୍ର ।

## ଶୃଗାଳର ଲୋଭ ।

ଏକଦା ଗୋଟିଏ ବ୍ୟାଧ ମୃଗୟା କରିବା ନିମିତ୍ତ ଅରଣ୍ୟ ମଧ୍ୟରେ ପ୍ରବେଶ କରି ଗୋଟିଏ ମୃଗ ବଧ କଲା । ତାହାକୁ ଘେନି ଆସୁଥିବା ସମୟରେ ଗୋଟିଏ ଭୀଷଣାକୃତି ବରାହ ଦେଖି, ମୃଗକୁ ଭୂତଳରେ ରଖି ଦେଇ, ବରାହକୁ ଲକ୍ଷ୍ୟକରି ଶର ନିକ୍ଷେପ କଲା । ବରାହ ବାଣବିଦ୍ଧ ହେବାରୁ, କ୍ରୋଧରେ ଉନ୍ମତ୍ତ ହୋଇ ଘୋର ଗର୍ଜ୍ଜନ କରି ବ୍ୟାଧକୁ ଆକ୍ରମଣ କଲା । ବରାହର ଆକ୍ରମଣରେ ବ୍ୟାଧ ଛିନ୍ନ-ଦ୍ରୁମ ପ୍ରାୟ ଭୂତଳରେ ପଡ଼ି ପ୍ରାଣତ୍ୟାଗ କଲା, ଏବଂ କିଛିକାଳ ପରେ ବ୍ୟାଧ-ଶରାହତ ବରାହ

ମଧ୍ୟ ମରିଗଲା । ମରଣ ସମୟରେ ସେମାନଙ୍କର ପଦାଘାତରେ ଗୋଟାଏ ସର୍ପ ମଧ୍ୟ ସେଠାରେ ପ୍ରାଣ ହରାଇଥିଲା ।

ଇତି ମଧ୍ୟରେ ଗୋଟାଏ ଶୃଗାଳ ସେହି ଅରଣ୍ୟ ମଧ୍ୟରେ ଆହାର ଅନ୍ୱେଷଣାର୍ଥ ଭ୍ରମଣ କରୁଁ କରୁଁ ସେଠାରେ ଆସି ପହୁଞ୍ଚିଲା ଏବଂ ମୃଗ, ବ୍ୟାଧ, ବରାହ ଓ ସର୍ପର ମୃତ ଦେହ ଦେଖି, ଆଜି ପ୍ରଚୁର ଖାଦ୍ୟ ମିଳିଅଛି ବୋଲି ମନେ ମନେ ଆହ୍ଲାଦିତ ହେବାକୁ ଲାଗିଲା । ଏତେ ଗୁଡ଼ାଏ ମୃତଦେହ ଦେଖି ସେ ବିଚାରିଲା, ଆଜି ମୁଁ କଣ ଖାଇବି? ଏମାନଙ୍କର ମାଂସରେ ମୋର ଛଅ ମାସ ଚଳିଯିବ । ତେବେ ଆଉ ଚିନ୍ତା କଣ? ଆଜି ଏହି ଧନୁର ଗୁଣକୁ ଖାଇବି, ଏହିପରି ବିଚାରି ସେ ସେହି ଧନୁର ଗୁଣକୁ ଛିନ୍ନ କରିବା ମାତ୍ରକେ, ଧନୁର ଅଗ୍ରଭାଗ ତାହାର ବକ୍ଷସ୍ଥଳରେ ବାଜିବାରୁ ବକ୍ଷ ବିଦୀର୍ଣ୍ଣ ହୋଇ ତାହାର ମୃତ୍ୟୁ ହେଲା ।

ଅତି ଲୋଭ ବିନାଶର ହେତୁ ଅଟେ । ବିଜ୍ଞ ଲୋକେ ଲୋଭକୁ ଦମନ କରି ନିରାପଦ ହୁଅନ୍ତି, ଅଜ୍ଞାନମାନେ ଲୋଭ-ପରବଶ ହୋଇ ନାନା ଆପଦରେ ପଡ଼ି ସମୟେ ସମୟେ ଆପଣାର ଜୀବନ ସୁଦ୍ଧା ହରାନ୍ତି ।

## ସର୍ ଫିଲିପ୍ ସିଡ୍ନି ।

ପୂର୍ବକାଳରେ ସର୍ ଫିଲିପ୍ ସିଡ୍ନି ନାମରେ ଜଣେ ଇଂଲଣ୍ଡୀୟ ଉଚ୍ଚବଂଶୀୟ ଯୋଦ୍ଧା, ଯୁଦ୍ଧକ୍ଷେତ୍ରରେ ଆହତ ହେବାରୁ, ଶିବିରକୁ ଆନୀତ ହୋଇଥିଲେ । ତାହାଙ୍କର ଅତ୍ୟନ୍ତ ପିପାସା ହେବାରୁ ସେ ଜଳ ମାଗିଲେ । ସେ ସମୟରେ ଶିବିରରେ ଅତ୍ୟଳ୍ପମାତ୍ର ଜଳ ଥିଲା ଏବଂ ନିକଟରେ ଜଳାଶୟ ନ ଥିବାରୁ, ଜଳ ଏକାନ୍ତ ଦୁର୍ଲଭ ହୋଇଥିଲା । ଶିବିରରେ ଯେଉଁ ଅତ୍ୟଳ୍ପ ପରିମାଣ ଜଳ ଥିଲା, ଜଣେ ପରିଚାରକ ତାହାକୁ ଗୋଟିଏ କ୍ଷୁଦ୍ର ପାତ୍ରରେ ଢାଳି ସିଡ୍ନିଙ୍କୁ ପାନାର୍ଥ ଦେଲା । ସିଡ୍ନି ହସ୍ତରେ ଜଳପାତ୍ର ଧରି ଜଳ ପାନ କରିବାକୁ ଉଦ୍ୟତ ହେଉ-

ଅଛନ୍ତି, ଏମନ୍ତ ସମୟରେ ଜଣେ ସାମାନ୍ୟ ସୈନିକ ମଧ୍ୟ ଆହତ ହୋଇ ଶିବରକୁ ଆନୀତ ହେଲା । ସେ ମଧ୍ୟ ତୃଷିତ ହୋଇ ଜଳ ମାଗିଲା ; ଏବଂ




ସିଡ୍‌ନିଙ୍କ ହସ୍ତସ୍ଥିତ ପାତ୍ର ଆଡ଼କୁ ବ୍ୟାକୁଳ ଭାବରେ ଅନାଇଲା । ତାହାର ସତୃଷ୍ଣ ବ୍ୟାକୁଳ ଭାବ ଦେଖି, ସିଡ୍‌ନି ଦୟାରେ ବିଗଳିତ ହୋଇ ନିଜେ ସେହି ଜଳ ପାନ ନ କରି, ଏ ଜଳ ମୋ ଅପେକ୍ଷା ତୁମ୍ଭର ବେଶୀ ଲୋଡ଼ା, ଏହା କହି ତତ୍‌କ୍ଷଣାତ୍ ସେହି ଜଳପାତ୍ର ଆହତ ସୈନିକର ହସ୍ତରେ ଦେଲେ ଏବଂ କିଛିକ୍ଷଣ ପରେ ୩୨ ବର୍ଷ ମାତ୍ର ବୟସରେ ପ୍ରାଣତ୍ୟାଗ କଲେ । ତାହାଙ୍କର ଏହି ଦୟା ନିମିତ୍ତ ସେ ଚିରସ୍ମରଣୀୟ ହୋଇ ଅଛନ୍ତି ।

# ବର୍ଷା ।

(ରାଗ କଳହଂସ କେଦାର)

ଆସନ୍ତେ ବର୍ଷାକାଳ   ନିଦାଘଶେଷେ
ଘୋଟଇ ମେଘମାଳ   ଆକାଶଦେଶେ ।
ଚମକଇ ବିଜୁଳି   ମେଘଦେହରେ
କମ୍ପଇ ବଜ୍ରନାଦେ   ମହୀ କାତରେ ।
କେତେବେଳେ ବା କଳା—ମେଘ ବକ୍ଷରେ
ଶୋଭଇ ଇନ୍ଦ୍ରଧନୁ   ସୂର୍ଯ୍ୟମୁଖରେ ।
ଅନାଇ ଜଳଧରେ   ତୃଷା-ଆକୁଳ
ଚାତକେ ଆର୍ତ୍ତସ୍ୱରେ   ମାଗନ୍ତି ଜଳ ।
ମୁଷଳଧାରେ ମେଘ   ବରଷେ ନୀର
ତେଣୁ ଶୀତଳ ତପ୍ତ—ଧରଣୀଶରୀର ।
ଜଳେ ପୂରଇ ନଦୀ   ବିଲ ପୋଖରୀ
ଶୁଭଇ କୃଷକର   ଗୀତ ଲହରୀ ।
ବଢ଼ଇ ଲଙ୍ଘି କୂଳ   ନଦୀନିକର
ଧାଏ ପ୍ରବଳ ବେଗେ   ସ୍ରୋତ ପ୍ରଖର,
ଭସାଇ ଗୃହ ଦ୍ୱାର   ପଶୁମାନବେ,
ଉପାଡ଼ି ମହାଦ୍ରୁମେ   ଗର୍ଜ୍ଜେ ଭୈରବେ ।
ଶ୍ୟାମଳ ଦୁର୍ବାଦଳେ   ଶୋଭିତ ମହୀ,
ସାଧବବୋହୂ ତଥି   ପରେ ଶୋଭଇ ।
କଦମ୍ବ ନୀଳୋତ୍ପଳ   ଚମ୍ପା ମାଳତୀ
ଯୁଇ ଜାଇ ପୁନ୍ନାଗ   ପ୍ରଫୁଲ୍ଲ ଅତି ।
ପୁଷ୍ପେ ଶୋଭିତ   ତୃଣପଟ୍ଟଆର
ସୁବର୍ଣ୍ଣଜିଣି କାନ୍ତି   କ ମନୋହାରୀ ।

ଜଳ ନିକଟେ ଭେଟେ ତାକର ଭେକ
ମହାହରଷଭରେ ଡାକେ ଡାହୁକ ।
ନୀଳମେଘ ଦର୍ଶନେ ଆନନ୍ଦଭରେ
ମୟୂର ନୃତ୍ୟ କରେ ଗିରିବନରେ ।
ଏକାଳେ ଗିରିଶୋଭା ନୟନ ହରେ,
ମଣ୍ଡିତ ଶୈଳଦେହ ଶୁଭ୍ର ନିର୍ଝରେ ।
ଶୁଭ୍ରମେଘ—ମୁକୁଟ ଶୋଭେ ମସ୍ତକେ,
ତହିଁ ପୁଣି ବିଜୁଳି—ହୀର ଝଟକେ ।
ବରଷାକାଳ ଅଟେ ମଙ୍ଗଳକାରୀ,
ପାଳଇ ପରଜାଙ୍କୁ ବରଷି ବାରି ।
ବାନ୍ଧବ ଅଟେ ତରୁ ଲତା ଜୀବର,
ପ୍ରକାଶଇ କରୁଣା ସେ ନିରନ୍ତର ।

## ବାଳକ ବାଳିକାମାନଙ୍କର କର୍ତ୍ତବ୍ୟ ।

ଏ ସଂସାର ଆମ୍ଭମାନଙ୍କର ମହାବିଦ୍ୟାଳୟ ଓ କର୍ମ-କ୍ଷେତ୍ର ଅଟେ । ଜ୍ଞାନଶିକ୍ଷା ଲଭି ସଂସାରର କାର୍ଯ୍ୟ କରିବା ନିମିତ୍ତ ବିଶ୍ୱବିଧାତା ପରମେଶ୍ୱର ଆମ୍ଭମାନଙ୍କୁ ଜ୍ଞାନ, ପ୍ରେମ ଓ ଇଚ୍ଛାଶକ୍ତି ପ୍ରଦାନ କରିଅଛନ୍ତି । ସମୁଦାୟ ବ୍ରହ୍ମାଣ୍ଡ ତାହାଙ୍କର ବିଧାନ ଅନୁସାରେ ଚାଲୁଅଛି । ବିଧାତାଙ୍କର ବିଧାନ ବା ନିୟମର ଶାସ୍ତ୍ର ଅନନ୍ତ ଅଟେ । ବାଲ୍ୟକାଳରୁ ସେହି ମହାଶାସ୍ତ୍ର ଶିକ୍ଷା କରିବା ପାଇଁ ବ୍ୟାକୁଳ ହୁଅ ଏବଂ ସମୁଦାୟ ଜୀବନକୁ ତାହାଙ୍କର ପବିତ୍ରବିଧିପାଳନରେ ନିଯୁକ୍ତ କର !

ପରମେଶ୍ୱର ଜଗତର ପରମ ପିତାମାତା, ଗୁରୁ ଏବଂ ରାଜା ଅଟନ୍ତି ଏବଂ ତାହାଙ୍କର ବିଧି ମଙ୍ଗଳମୟ ଅଟେ । ସେ ଆମ୍ଭମାନଙ୍କୁ କୁଟୁମ୍ବ ଏବଂ ଜନସମାଜ ମଧ୍ୟରେ ସ୍ଥାପନ କରି ସ୍ନେହ ଭକ୍ତି ବିଶ୍ୱାସ ସତ୍ୟନିଷ୍ଠା ପ୍ରଭୃତି

ସଦ୍ଗୁଣମାନ ଶିଖାଉଅଛନ୍ତି । ହେ ବାଳକ ବାଳିକା, ତୁମ୍ଭେମାନେ ସ୍ନେହୀ, ଭକ୍ତିମାନ୍, ବିଶ୍ୱାସୀ ଓ ସତ୍ୟନିଷ୍ଠ ହୋଇ ଏବଂ ପୁଣ୍ୟଚରିତ୍ର ଲାଭ କରି ଜୀବନକୁ ସାର୍ଥକ କର ।

ପିତା ମାତାଙ୍କୁ ପ୍ରତ୍ୟକ୍ଷ ଦେବତା ଜାଣି, ସେମାନଙ୍କର ସେବା କରିବ । ସେମାନଙ୍କର ଅତୁଳନ ପବିତ୍ର ସ୍ନେହ ସର୍ବଦା ସ୍ମରଣ କରି ସେମାନଙ୍କ ପ୍ରତି ଭକ୍ତି କରିବ ଏବଂ ସେମାନଙ୍କର ଆଜ୍ଞା ଯଥାସାଧ୍ୟ ସାନନ୍ଦ ହୃଦୟରେ ପାଳନ କରିବ । ଯେଉଁ ଗୃହର ସନ୍ତାନମାନେ ପିତାମାତାଙ୍କର ଅନୁଗତ ଏବଂ ସେମାନଙ୍କ ସେବାରେ ଅନୁରକ୍ତ, ସେମାନଙ୍କର ଗୃହ ସ୍ୱର୍ଗର ଆନନ୍ଦରେ ପରିପୂର୍ଣ୍ଣ । ପିତା ମାତା ସଂସାର-ଲୀଳା ସାରି ପରଲୋକଗତ ହେଲେ ସୁଦ୍ଧା, ସେମାନଙ୍କର ସ୍ନେହ ନିତ୍ୟ ସ୍ମରଣ କରି, ସେମାନଙ୍କୁ ହୃଦୟର ଭକ୍ତି ପ୍ରଦାନ କରିବ । ଶିକ୍ଷାଦାତା ଗୁରୁ, ପିତୃବ୍ୟ ମାତୁଳ, ଖୁଡ଼ି, ମାତୁଳାନୀ, ଜ୍ୟେଷ୍ଠ ଭ୍ରାତା, ଜ୍ୟେଷ୍ଠ ଭଗିନୀ ପ୍ରଭୃତି ବୟୋଜ୍ୟେଷ୍ଠମାନଙ୍କୁ ଗୁରୁଜନ ଜାଣି ସେମାନଙ୍କ ପ୍ରତି ସ୍ନେହଭକ୍ତି ହୃଦୟରେ ରଖି ସେମାନଙ୍କୁ ସୁଖୀ କରିବା ପାଇଁ ଯତ୍ନ କରିବ ।

ଭ୍ରାତାମାନେ ପରସ୍ପରକୁ ଓ ଭଗିନୀମାନଙ୍କୁ ସ୍ନେହ କରିବେ ଏବଂ ଭଗିନୀମାନେ ପରସ୍ପରକୁ ଓ ଭ୍ରାତାମାନଙ୍କୁ ସ୍ନେହ କରିବେ ; କାରଣ ସେମାନେ ଏକ ପିତା ମାତାର ସନ୍ତାନ ଅଟନ୍ତି । ପରାତ୍ପର ପରମେଶ୍ୱର ଭ୍ରାତା ଭଗିନୀମାନଙ୍କୁ ପବିତ୍ର ପ୍ରେମବନ୍ଧନରେ ବାନ୍ଧିଅଛନ୍ତି ; ଅତଏବ ପରସ୍ପର ପ୍ରତି ହିଂସା ଭାବ ରଖି କଳହ କରିବା କିମ୍ବା ପରସ୍ପର ପ୍ରତି ନିର୍ଦ୍ଦୟ ହେବା କଦାପି ଉଚିତ ନୁହେଁ । ଭ୍ରାତା ଭଗିନୀ ମଧ୍ୟରେ ଯେଉଁମାନେ ଜ୍ୟେଷ୍ଠ, ସେମାନଙ୍କୁ ମାନ୍ୟ କରିବ ଏବଂ ଯେଉଁମାନେ କନିଷ୍ଠ ସେମାନଙ୍କ ପ୍ରତି ହୃଦୟରେ ସର୍ବଦା ସ୍ନେହ ରଖିବ ।

ମନରୁ ଅହଙ୍କାର ଦୂର କରି, ସମସ୍ତଙ୍କର ସେବା କରିବ । କୁସଙ୍ଗ ପରିତ୍ୟାଗ କରି, ସାଧୁ ସଙ୍ଗରେ ରହି ସର୍ବଦା ସୁଶିକ୍ଷା କରିବ । ପାଠ୍ୟ-

ପୁସ୍ତକମାନ ମନୋଯୋଗ ପୂର୍ବକ ଅଧ୍ୟୟନ କରି, ସେଥିରେ ଥିବା ଉତ୍ତମ ଭାବ ଓ ଉପଦେଶମାନ ମନରେ ରଖିବ । କାହାରି ପ୍ରତି ଘୃଣା କରିବ ନାହିଁ । ପଶୁ ପକ୍ଷୀ କୀଟ ପତଙ୍ଗ କାହାର ପ୍ରତି ନିଷ୍ଠୁର ବ୍ୟବହାର କରିବ ନାହିଁ । ଗୃହ-ପାଳିତ ଜୀବ ଜନ୍ତୁମାନଙ୍କ ପ୍ରତି ମନରେ ସ୍ନେହାଦର ରଖି, ସେମାନଙ୍କୁ ଆହାରାଦି ଦେବ ଏବଂ ସେମାନଙ୍କ ପ୍ରତି ଯତ୍ନ କରିବ ।

## ଶରତ୍ ।

(ରସ ମଙ୍ଗଳ ।)

ସୁନ୍ଦର ଶରଦକାଳ ବରଷକଲା ଆସି
ହସିଲା ଧରଣୀରାଣୀ ଶୋଭା ପରକାଶି ।

କାଶତଣ୍ଡୀ-ଫୁଲେ ମଣ୍ଡି ଦିଶଇ ଧବଳ
ସରୋବରେ ଫୁଟିଛନ୍ତି କୁମୁଦ-କମଳ ।

ସୁନ୍ଦର ମାଳତୀ ଗଙ୍ଗ—ଶିଉଳି ଝଟରେ
ଧବଳିତ ଉପବନ ଜନ-ମନ ହରେ ।

ଖଣ୍ଡ ଖଣ୍ଡ ଧଳାମେଘ ସୁନୀଳ ଅମ୍ବରେ
ଭାସଇ ବୋଇତ ଯଥା ନୀଳ ସମୁଦ୍ରରେ ।

ରଜନୀରେ ନୀଳାକାଶେ ଚନ୍ଦ୍ରମା ଉଜ୍ଜ୍ୱଳ
ବିରାଜଇ ଦଶଦିଶ କରଣ ଧବଳ ।

ଉଜ୍ଜ୍ୱଳ ନକ୍ଷତ୍ରମାଳା ଚନ୍ଦ୍ର ସଙ୍ଗତରେ
ଶୋଭନ୍ତି ପ୍ରଫୁଲ୍ଲ ପୁଷ୍ପ ପରାୟେ ଅମ୍ବରେ ।

ନଦୀ ପୁଷ୍କରଣୀ ଜଳ ଏବେ ସୁନିର୍ମଳ
କ୍ରୀଡ଼ନ୍ତି ହରଷେ ତହିଁ ଧଳା ହଂସଦଳ ।

ଧାନ୍ୟ କ୍ଷେତ୍ରେ ପକ୍ୱଶାଳି   ଦିଶଇ ସୁନ୍ଦର
ଦରଶନେ ଆନନ୍ଦିତ   ମନ କୃଷକର ।
ସୁନୀଲ ଅପରାଜିତା   ଫୁଟିଅଛି ବନେ,
ବନ୍ଧୁଲି କୁସୁମ-ରଙ୍ଗ   ତୋଷଇ ଲୋଚନେ ।
ଧରଛି ଅଗସ୍ତିଦ୍ରୁମ   କୁସୁମ ମଞ୍ଜରୀ,
ବଙ୍କିମ ଦିଶଇ ଯାହା   ବାଳଇନ୍ଦୁ ପରି ।
ପ୍ରଦୋଷେ ଫୁଟଇ ଜହ୍ନି—ଫୁଲ ଘରେ ଘରେ,
ବାଳକେ ତୋଳନ୍ତି ତାହା   ମହା ଆନନ୍ଦରେ ।
ପ୍ରଫୁଲ୍ଲ କୁସୁମ ବନୁ   ପୁଷ୍ପଗନ୍ଧ ହରି
ଶୀତଳ ସୁରଭି ପଦ୍ମ—କାନନେ ସଞ୍ଚରି,
ନଚାଇ ତରଙ୍ଗେ ନଦୀ—ସରୋବର-ନୀର,
ନତ୍ରାଇଣ ଶସ୍ୟାବଳୀ   ବହଇ ସମୀର ।
ରଜନୀରେ କୁମାରୀଏ   ମହା ଆନନ୍ଦରେ
ମଣ୍ଡିଣ ସୁନୀଲ କେଶ   ଶୁଭ୍ର କୁସୁମରେ,
ତାରାବମଣ୍ଡିତ ନୀଳ—ଗଗନକୁ ଚାହିଁ
ହରନ୍ତି ମାନସ ନାନା—ରଙ୍ଗେ ଗୀତ ଗାଇ ।

## ମହାଭାରତ-କଥା ।

ପ୍ରାଚୀନ କାଳରେ ଦିଲ୍ଲୀ ନିକଟସ୍ଥ ହସ୍ତିନାପୁର, ବିଖ୍ୟାତ କୁରୁବଂଶୀୟ ରାଜାମାନଙ୍କର ରାଜଧାନୀ ଥିଲା । ସେହି ରାଜବଂଶରେ ଧୃତରାଷ୍ଟ୍ର ଓ ପାଣ୍ଡୁ ନାମରେ ଦୁଇଭାଇ ଜନ୍ମଗ୍ରହଣ କରିଥିଲେ । ବଡ଼ଭାଇ ଧୃତରାଷ୍ଟ୍ର ଜନ୍ମାନ୍ଧ ଥିଲେ ବୋଲି, ସାନ ଭାଇ ପାଣ୍ଡୁ ରାଜା ହୋଇଥିଲେ । ଧୃତରାଷ୍ଟ୍ରଙ୍କର ସ୍ତ୍ରୀଙ୍କର ନାମ ଗାନ୍ଧାରୀ । ଏହାଙ୍କ ଗର୍ଭରେ ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତି ଏକଶତ ପୁତ୍ର ଜନ୍ମଗ୍ରହଣ କରିଥିଲେ । ସେମାନେ କୌରବ ନାମରେ

ଖ୍ୟାତ । ପାଣ୍ଡୁଙ୍କର ଦୁଇ ସ୍ତ୍ରୀ ଥିଲେ, କୁନ୍ତୀ ଓ ମାଦ୍ରୀ । କୁନ୍ତୀଙ୍କ ଗର୍ଭରେ ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ ଏବଂ ମାଦ୍ରୀଙ୍କ ଗର୍ଭରେ ନକୁଳ ଓ ସହଦେବ ଜନ୍ମଗ୍ରହଣ କରିଥିଲେ । ଏମାନେ ପାଣ୍ଡବ ନାମରେ ଖ୍ୟାତ । ପାଣ୍ଡବମାନଙ୍କର ଶୈଶବାବସ୍ଥାରେ ପାଣ୍ଡୁଙ୍କ ମୃତ୍ୟୁ ହେଲା । ଧୃତରାଷ୍ଟ୍ର ଦ୍ରୋଣାଚାର୍ଯ୍ୟଙ୍କୁ କୌରବ ଓ ପାଣ୍ଡବମାନଙ୍କୁ ଅସ୍ତ୍ର-ବିଦ୍ୟା ଶିଖାଇବା ନିମିତ୍ତ ନିଯୁକ୍ତ କଲେ । ଦ୍ରୋଣାଚାର୍ଯ୍ୟ ସେମାନଙ୍କୁ ଯତ୍ନପୂର୍ବକ ଯୁଦ୍ଧ-ବିଦ୍ୟା ଶିଖାଇଲେ । ଧନୁର୍ବିଦ୍ୟାରେ ଅର୍ଜ୍ଜୁନ ଅନ୍ୟ ଭ୍ରାତାମାନଙ୍କ ଅପେକ୍ଷା ଅଧିକତର ନିପୁଣ ହୋଇଥିଲେ । ମହାବଳଧାରୀ ଭୀମ ସର୍ବାପେକ୍ଷା ଗଦାଯୁଦ୍ଧରେ ଅଧିକତର ପାରଦର୍ଶୀ ହୋଇଥିଲେ । ପାଣ୍ଡବମାନେ ଧାର୍ମିକ ଓ ସତ୍ୟପ୍ରିୟ ଥିଲେ କିନ୍ତୁ ଦୁର୍ଯ୍ୟୋଧନାଦି କୌରବମାନେ ଅହଙ୍କାରୀ ହିଂସ୍ରକ ଓ କପଟାଚାରୀ ଥିଲେ । ସେମାନେ ସର୍ବଦା ପାଣ୍ଡବମାନଙ୍କର ଅନିଷ୍ଟ ଚାହୁଁଥିଲେ । ଥରେ ସେମାନେ ଭୀମଙ୍କୁ ବିଷ ଖୁଆଇ ତାହାଙ୍କୁ ଅଚୈତନ୍ୟ ଅବସ୍ଥାରେ ଜଳରେ ବୁଡ଼ାଇ ଦେଇଥିଲେ କିନ୍ତୁ ସେଥିରେ ଭୀମ ମଲେ ନାହିଁ । ଅବଶେଷରେ ଦୁର୍ଯ୍ୟୋଧନ ପଞ୍ଚପାଣ୍ଡବଙ୍କର ପ୍ରାଣ ବିନାଶ ନିମିତ୍ତ ଗୋଟାଏ ଚକ୍ରାନ୍ତ କଲେ । ଜତୁଗୃହ ପ୍ରସ୍ତୁତ କରାଇ ସେଥିରେ ପାଣ୍ଡବମାନଙ୍କୁ ବାସ କରିବାକୁ କହି ରାତ୍ରିକାଳରେ ସେହି ଗୃହ ଦଗ୍ଧ କରାଇ ଦେଲେ ; କିନ୍ତୁ ପାଣ୍ଡବମାନଙ୍କର ପରମବନ୍ଧୁ ଧାର୍ମିକ ବିଦୁର, ସେମାନଙ୍କୁ ପୂର୍ବରୁ ସତର୍କ କରି ଦେଇଥିବାରୁ ସେମାନେ ଗୃହଦାହ ପୂର୍ବରୁ ପଳାଇ ଯାଇଥିଲେ । ଅନନ୍ତର ସେମାନେ ଛଦ୍ମବେଶ ଧାରଣ କରି ଦେଶ ଦେଶାନ୍ତରରେ ଭ୍ରମଣ କରିବାକୁ ଲାଗିଲେ । ଏଣେ ଦୁର୍ଯ୍ୟୋଧନ ପ୍ରଭୃତି କୌରବମାନେ, ପାଣ୍ଡବମାନଙ୍କର ମୃତ୍ୟୁ ହୋଇଅଛି ବିଚାରି, ଆନନ୍ଦିତ ଚିତ୍ତରେ ରାଜ୍ୟ ଭୋଗ କରିବାକୁ ଲାଗିଲେ ।

ଏହିମଧ୍ୟରେ ପଞ୍ଚାଳ ଦେଶର ରାଜକନ୍ୟା ଦ୍ରୌପଦୀଙ୍କର ସ୍ୱୟମ୍ବର ଉପସ୍ଥିତ ହେଲା । ପଞ୍ଚାଳରାଜ ଦ୍ରୁପଦଙ୍କର ଏହି ପଣ ଥିଲା ଯେ ଊର୍ଦ୍ଧ୍ୱରେ ଗୋଟିଏ ମତ୍ସ୍ୟ ଥିବ ଏବଂ ତଳରେ ଗୋଟିଏ ଜଳପାତ୍ର ଥିବ ; ସେହି

ଜଳପାତ୍ର ମଧ୍ୟରେ ମତ୍ସ୍ୟର ପ୍ରତିବିମ୍ବ ଦେଖି ଯେ ସେହି ମତ୍ସ୍ୟର ଚକ୍ଷୁକୁ ବାଣବିଦ୍ଧ କରି ପାରିବ, ତାହାକୁ ଦ୍ରୌପଦୀ ବରମାଲ୍ୟ ଦେବେ, ପାଣ୍ଡବମାନେ ଦ୍ରୌପଦୀଙ୍କର ସ୍ୱୟମ୍ବର ହେବ ବୋଲି ସମ୍ବାଦ ପାଇ ପଞ୍ଚାଳ ରାଜ୍ୟକୁ ଆଗମନ କଲେ । ନାନା ଦେଶମାନଙ୍କରୁ ରାଜା ଓ ରାଜପୁତ୍ରମାନେ ଆସି ସେହି ଲକ୍ଷ୍ୟଭେଦ କରିବାକୁ ଚେଷ୍ଟା କଲେ କିନ୍ତୁ କେହି ଲକ୍ଷ୍ୟଭେଦ କରି ପାରିଲେ ନାହିଁ । ପରିଶେଷରେ ବ୍ରାହ୍ମଣ-ବେଶଧାରୀ ଅର୍ଜ୍ଜୁନ ଲକ୍ଷ୍ୟଭେଦ କଲେ । ରାଜା ଦ୍ରୁପଦ, ସେମାନଙ୍କର ପରିଚୟ ଗ୍ରହଣ କରି ସେମାନଙ୍କୁ ମହାସମାଦରରେ ଗ୍ରହଣ କଲେ । ମାତାଙ୍କ ଆଦେଶ ଅନୁସାରେ ଦ୍ରୌପଦୀ ପଞ୍ଚପାଣ୍ଡବଙ୍କର ପତ୍ନୀ ହେଲେ । ଏଥିଉତ୍ତାରେ ଧୃତରାଷ୍ଟ୍ର, ପାଣ୍ଡବମାନେ ଜୀବିତ ଅଛନ୍ତି, ଏବଂ ଦ୍ରୌପଦୀଙ୍କୁ ବିବାହ କରିଅଛନ୍ତି, ଶୁଣି ସେମାନଙ୍କୁ ଡକାଇ ଅର୍ଦ୍ଧ-ରାଜ୍ୟ ପ୍ରଦାନ କଲେ । ଇନ୍ଦ୍ରପ୍ରସ୍ଥ ସେମାନଙ୍କର ରାଜଧାନୀ ହେଲା ।

ଏଥିଉତ୍ତାରେ ପାଣ୍ଡବମାନେ ନାନା ଦେଶ ଜୟ କରି ଯଶସ୍ୱୀ ହେଲେ । କିଛିକାଳ ପରେ ରାଜସୂୟ ଯଜ୍ଞ ଆରମ୍ଭ କରି ଭାରତର ସମସ୍ତ ରାଜା-ମାନଙ୍କୁ ନିମନ୍ତ୍ରଣ କଲେ । ରାଜାମାନେ ନାନା ଉପହାର ଘେନି ଯଜ୍ଞ ସଭାରେ ଉପସ୍ଥିତ ହେଲେ । ପାଣ୍ଡବମାନଙ୍କର ଐଶ୍ୱର୍ଯ୍ୟ ଦେଖି କ୍ରୁର ଦୁର୍ଯ୍ୟୋଧନର ହୃଦୟ ହିଂସା-ଜର୍ଜ୍ଜରିତ ହେଲା ଏବଂ ସେ ପାଣ୍ଡବମାନ-ଙ୍କର ଅନିଷ୍ଟ ଚିନ୍ତା କରିବାକୁ ଲାଗିଲେ । ଦୁର୍ଯ୍ୟୋଧନଙ୍କର ମାତୁଳ ଶକୁନି ଦ୍ୟୁତକ୍ରୀଡ଼ାରେ ଅତ୍ୟନ୍ତ ନିପୁଣ ଥିଲେ । ତାହାଙ୍କର ପରାମର୍ଶରେ ଦୁର୍ଯ୍ୟୋଧନ ଯୁଧିଷ୍ଠିରଙ୍କୁ ଦ୍ୟୁତକ୍ରୀଡ଼ା କରିବା ପାଇଁ ଆହ୍ୱାନ କଲେ । ଯୁଧିଷ୍ଠିର ଦ୍ୟୁତକ୍ରୀଡ଼ାରେ ପରାଜିତ ହୋଇ କ୍ରମେ କ୍ରମେ ଧନ, ରତ୍ନ, ରାଜ୍ୟ, ଦାସ ଦାସୀ, ଭ୍ରାତାମାନଙ୍କୁ ଏବଂ ଆପଣାକୁ ସୁଦ୍ଧା ହରାଇ ହୃତସର୍ବସ୍ୱ ହେଲେ । ପରିଶେଷରେ ଦ୍ରୌପଦୀଙ୍କୁ ପଣ ରଖି ପୁନର୍ବାର କ୍ରୀଡ଼ା କଲେ । ସେଥିରେ ମଧ୍ୟ ଶକୁନି ଜୟଲାଭ କରିବାରୁ ଦୁର୍ଯ୍ୟୋଧନ ଦ୍ରୌପଦୀଙ୍କୁ ସଭାମଧ୍ୟକୁ ଅଣାଇ ଅପମାନ କରାଇଲେ । ଦୁର୍ଯ୍ୟୋଧନ ସେଥିରେ ସନ୍ତୁଷ୍ଟ

ନ ହୋଇ ପୁଣି ଦ୍ୟୂତକ୍ରୀଡା ନିମିତ୍ତ ଯୁଧିଷ୍ଠିରଙ୍କୁ ଦ୍ୱିତୀୟଥର ଆହ୍ୱାନ କଲେ । ଏଥର କ୍ରୀଡାରେ ଏହି ପଣ ହେଲା ଯେ ଯେଉଁ ପକ୍ଷ ପରାଜିତ ହେବେ, ସେ ପକ୍ଷର ସମସ୍ତେ ଦ୍ୱାଦଶବର୍ଷ ବନବାସ ଏବଂ ଏକବର୍ଷ ଅଜ୍ଞାତ-ବାସ କରିବେ । ଯୁଧିଷ୍ଠିର ପୁଣି ପରାଜିତ ହେବାରୁ ପାଣ୍ଡବମାନେ ଦ୍ରୌପଦୀଙ୍କୁ ଘେନି ବନଗମନ କଲେ । ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କ ସଙ୍ଗରେ ପଣ କରିଥିଲେ ଯେ ସେମାନେ ବନବାସ ଓ ଅଜ୍ଞାତବାସ କରି ଲେଉଟି ଆସିଲେ ସେ ସେମାନଙ୍କୁ ରାଜ୍ୟଧନାଦି ପ୍ରତ୍ୟର୍ପଣ କରିବେ ।

ପାଣ୍ଡବମାନେ ଦ୍ୱାଦଶବର୍ଷକାଳ ନାନା ତୀର୍ଥ ପର୍ଯ୍ୟଟନ କରି ବର୍ଷେ ବିରାଟ ରାଜ୍ୟରେ ଛଦ୍ମବେଶରେ ଅଜ୍ଞାତବାସ କଲେ । ଅଜ୍ଞାତବାସ ଉତ୍ତାରୁ ସେମାନେ ଭୁବନବିଖ୍ୟାତ ଦ୍ୱାରକାପତି କୃଷ୍ଣଙ୍କୁ ଦୂତସ୍ୱରୂପ ଦୁର୍ଯ୍ୟୋଧନଙ୍କ ନିକଟକୁ ପ୍ରେରଣ କଲେ । କୃଷ୍ଣ ହସ୍ତିନାପୁରକୁ ଯାଇ ପାଣ୍ଡବଙ୍କ ପାଇଁ ରାଜ୍ୟ-ପ୍ରତ୍ୟର୍ପଣ ପ୍ରାର୍ଥନା କଲେ କିନ୍ତୁ ଖଳବୁଦ୍ଧି ଦୁର୍ଯ୍ୟୋଧନ କହିଲେ, ମୁଁ ବିନାଯୁଦ୍ଧରେ ସୂଚ୍ୟଗ୍ର ପରିମାଣ ଭୂମି ସୁଦ୍ଧା ଦେବ ନାହିଁ । ବିଜ୍ଞବ୍ୟକ୍ତିମାନେ ଦୁର୍ଯ୍ୟୋଧନଙ୍କୁ ଯେତେ ସଦୁପଦେଶ ଦେଲେ, ସେ ସମସ୍ତ ବ୍ୟର୍ଥ ହେଲା । ପାଣ୍ଡବମାନେ ବାଧ୍ୟ ହୋଇ ଯୁଦ୍ଧ ନିମିତ୍ତ ଉଦ୍ୟୋଗ କଲେ । ଦୁର୍ଯ୍ୟୋଧନ ମଧ୍ୟ ଯୁଦ୍ଧର ଆୟୋଜନ କଲେ । ଉଭୟ ପକ୍ଷ ଯୁଦ୍ଧନିମିତ୍ତ କୁରୁକ୍ଷେତ୍ର ନାମକ ମହାସମରକ୍ଷେତ୍ରରେ ଉପସ୍ଥିତ ହେଲେ । ଏହି ଯୁଦ୍ଧରେ ଭାରତର ଅଧିକାଂଶ ରାଜା ଯୋଗ ଦେଇଥିଲେ । ଏମାନଙ୍କ ମଧ୍ୟରୁ ପଞ୍ଚାଳର ଅଧୀଶ୍ୱର ଦ୍ରୁପଦ, ଅଙ୍ଗରାଜ୍ୟର ନୃପତି କର୍ଣ୍ଣ, ଦ୍ୱାରକାର ଅଧିପତି କୃଷ୍ଣ, ସିନ୍ଧୁଦେଶର ନରପତି ଜୟଦ୍ରଥ ପ୍ରଧାନ ଥିଲେ । କୃଷ୍ଣ ପାଣ୍ଡବମାନଙ୍କ ପକ୍ଷ ଗ୍ରହଣ କଲେ । ଦୁର୍ଯ୍ୟୋଧନଙ୍କ ପକ୍ଷରେ ସୈନ୍ୟ ଏବଂ ବୀରସଂଖ୍ୟା ଅଧିକ ଥିଲେହେଁ, କୃଷ୍ଣଙ୍କ ମନ୍ତ୍ରଣାବଳରେ ପାଣ୍ଡବମାନେ ଜୟଲାଭ କଲେ । ଏହି ମହାସମର ୧୮ ଦିନ ପର୍ଯ୍ୟନ୍ତ ହୋଇଥିଲା । ଯୁଦ୍ଧରେ ଭ୍ରାତାମାନଙ୍କ ସହିତ ଦୁର୍ଯ୍ୟୋଧନ ଏବଂ ତାହାଙ୍କ ପକ୍ଷୀୟ ମହାରଥୀ ଭୀଷ୍ମ,

ଦ୍ରୋଣ, କର୍ଣ୍ଣ, ଶଲ୍ୟ, ଜୟଦ୍ରଥ ପ୍ରଭୃତି ଏବଂ ପାଣ୍ଡବ ପକ୍ଷର ଅଭିମନ୍ୟୁ, ଦ୍ରୁପଦ, ଧୃଷ୍ଟଦ୍ୟୁମ୍ନ ପ୍ରଭୃତି ମହାବୀରମାନେ ନିହତ ହେଲେ । ଯୁଦ୍ଧକ୍ଷେତ୍ର ମହାଶ୍ମଶାନରେ ପରିଣତ ହେଲା । ବିଧବାମାନଙ୍କର ହୃଦୟ-ବିଦାରକ ବିଳାପ-ନାଦରେ କୁରୁକ୍ଷେତ୍ର ପରିପୂର୍ଣ୍ଣ ହେଲା ।

ଯୁଦ୍ଧାନ୍ତେ ଯୁଧିଷ୍ଠିର ରାଜସିଂହାସନରେ ଆରୋହଣ କରି ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କଲେ । କେତେକ ବର୍ଷ ରାଜତ୍ୱ କଲା ଉତ୍ତାରେ, ଶ୍ରୀକୃଷ୍ଣଙ୍କର ମୃତ୍ୟୁସମ୍ବାଦ ପାଇ ଏକାନ୍ତ ଶୋକାର୍ତ୍ତ ଓ ସଂସାର ପ୍ରତି ବିରାଗୀ ହୋଇ ରାଜସିଂହାସନ ତ୍ୟାଗ କଲେ ଏବଂ ଦ୍ରୌପଦୀ ଓ ଚାରି ଭାଇଙ୍କି ସଙ୍ଗରେ ଘେନି ତପସ୍ୟାର୍ଥ ହିମାଳୟକୁ ପ୍ରସ୍ଥାନ କଲେ ।

## ହେମନ୍ତ ।

(ସ୍ୱର୍ଗ ସମାବେଶ)

ମଧୁର ଶରତ କାଳର କ୍ରମେ ହୋଇଲା ଅନ୍ତ,
ଉପସ୍ଥିତ ଏବେ ଭୁବନେ ହିମମୟ ହେମନ୍ତ ।
ଦିନ କ୍ରମେ ହେଲା ନିର୍ତନ, ରାତି ବଢିଲା କ୍ରମେ,
ଦିନକର ତେଜ କମିଲା ହିମଋତୁ-ଆଗମେ ।
ଉତ୍ତରଦିଗରୁ ବହଇ ଅତି ଶୀତ-ପବନ,
କାକର ପଡଇ ବହୁତ ପୋଡ଼ି କମଳ ବନ ।
ପବିତ୍ର ପ୍ରଭାତ ସମୟେ ନରେ ଭକ୍ତିଭରେ
ସ୍ନାନ କରି ମତ୍ତ ପ୍ରଭୁଙ୍କ ନାମ ସଂକୀର୍ତ୍ତନରେ ।
ଫୁଟିଅଛୁ ନୀଳକୁମୁଦ ନୀଳ ନିର୍ମଳ ଜଳେ;
ସରୋବର ଦିଶେ ଶୋଭନ, ଶୋଭା ବଚନ ବଳେ ।
ନାନାଜାତି ବନବିହଙ୍ଗେ ଶସ୍ୟକ୍ଷେତ୍ର ଆକୁଳ;
ଜଳେ ବିହରନ୍ତି ଆନନ୍ଦେ ହଂସ କାଦମ୍ବକୁଳ ।

ନିଶାକାଳେ ମୃଗ ବରାହ   ବନୁଁ ହୋଇ ବାହାର,
ଅଥୟ କରନ୍ତି କୃଷକେ   ଶସ୍ୟ କରଣ ଚୁର ।
ପକ୍ୱଶାଳିପୂର୍ଣ୍ଣ କେଦାର   ଦେଖି କୃଷକଗଣେ
ଗୀତ ଗାଇ ଶସ୍ୟ କାଟନ୍ତି   ଅତି ପ୍ରଫୁଲ୍ଲମନେ ।
ଖଳା କରି ଗ୍ରାମ ସୀମାରେ   ଧାନ ଅମଳ କରି
ଗୃହକୁ ନିଅନ୍ତି ଆନନ୍ଦେ   ବିଭୁଦୟା ସୁମରି ।

## ଶିଶିର ।

(ସ୍ୱଗ ସମ୍ମେଳଣ)

ଚାହୁଁ ଚାହୁଁ ହେଲା ହେମନ୍ତ   ପରିଣତ ଶିଶିରେ ;
ଘୋର ଜାଡ଼ ମାଡ଼ି ପଡ଼ିଲା   କହୁଁ କହୁଁ ମହୀରେ ।
ଧନବନ୍ତଜନେ ଅଙ୍ଗରେ   ଶୀତବସ୍ତ୍ର ବହିଲେ
ଦରିଦ୍ରେ ଭାଗ୍ୟକୁ ଆଦରି   ଶୀତକଷ୍ଟ ସହିଲେ ।
ରଜନୀରେ ତାରା ଚନ୍ଦ୍ରମା   ପାଣ୍ଡୁବର୍ଣ୍ଣ ଦିଶିଲେ
ଘୋଟିଲା କୁହୁଡ଼ି ଚୌଦିଗେ ଗ୍ରାମ କାନନ ବନେ ।
ଆଖୁକ୍ଷେତ ଦଣେ ଯତନ   ଆଖୁଶାଳରେ ବସି
ଗ୍ରାମକଥା ଗ୍ରାମବାସିଏ   ଗଳ୍ପ କରନ୍ତି ହସି ।
ଆଖୁ ଭାଙ୍ଗି ରସ ମଧୁର   ପିଇ ବାଳକଗଣ,
ବୁଲନ୍ତି ଚୌଦିଗେ, ହରଷେ   ପୂରିଅଛି ବଦନ ।
ସ୍ୱର୍ଣ୍ଣକାନ୍ତିକଣା ସୋରିଷ   ଶତବର୍ଣ୍ଣ କୁସୁମେ
ଚଉଦିଗ ଅତି ଶୋଭିତ   ଜନ ନୟନ ରମେ ।
କିବା ମନୋହର ସେ ଶୋଭା,   କାହିଁ ତା ପଟାନ୍ତର
ଧରଣୀରାଣୀ କି ପିନ୍ଧିଛି   ଚାରୁ ପୀତ–ଅମ୍ବର ।

ବାଡ଼ମାନଙ୍କରେ ଫୁଟିଛୁ ସୋମଫୁଲ ଧବଳ
ଦିଶଇ ସୁନ୍ଦର ଯେମନ୍ତ ନଭେ ତାରକାଦଳ ।
ଶୀତ ଅନ୍ତେ ପୁଣି ଆସିବ ମଧୁମୟ ବସନ୍ତ ।
ଧନ୍ୟ ଧନ୍ୟ ବିଶ୍ୱକାରଣ ତବ ଦୟା ଅନନ୍ତ ।

## ଚିଲିକା ହ୍ରଦ ।

ଆମ୍ଭମାନଙ୍କର ଜନ୍ମଭୂମି ଓଡ଼ିଶାର ଦକ୍ଷିଣପୂର୍ବ କୋଣରେ ଚିଲିକା ନାମରେ ଗୋଟିଏ ବୃହତ୍ ହ୍ରଦ ଅଛି । ଓଡ଼ିଶାର ପୂର୍ବସୀମାରେ ଯେଉଁ ବଙ୍ଗସାଗର ଅଛି, ସେଥିର କିୟଦଂଶ, ଗୋଟିଏ ସୁଦୀର୍ଘ ବାଲୁକାପ୍ରାଚୀର ଦ୍ୱାରା, କାଳକ୍ରମେ ସମୁଦ୍ରରୁ ବିଚ୍ଛିନ୍ନ ହୋଇ ଚିଲିକା ହ୍ରଦରୂପରେ ପରିଣତ ହୋଇଅଛି । ଏହି ବାଲୁକା ପ୍ରାଚୀରର ପ୍ରସ୍ଥ ଶ୍ୟୁଶତ ହସ୍ତରୁ ଅଧିକ ନୁହେଁ । ପଶ୍ଚିମରେ ପର୍ବତଶ୍ରେଣୀ କାହିଁ ହ୍ରଦର ତଟ ଉପରେ ଲମ୍ବଭାବରେ ଦଣ୍ଡାୟମାନ ରହିଅଛି, କାହିଁ ଅବା ବହୁଦୂର ପର୍ଯ୍ୟନ୍ତ ବିସ୍ତୃତ ହୋଇ ହ୍ରଦର ଗର୍ଭକୁ ଭେଦ କରୁଅଛି । ହ୍ରଦର ଦକ୍ଷିଣରେ ଅନ୍ୟୋଚ୍ଚ ପର୍ବତମାନ ଓଡ଼ିଶା ଓ ମାନ୍ଦ୍ରାଜ ପ୍ରଦେଶର ସୀମାନ୍ତରୂପେ ବିରାଜିତ । ଉତ୍ତର ଦିଗରେ ବିଲ, ନଳବନ ଓ କ୍ଷୁଦ୍ର କ୍ଷୁଦ୍ର ଉଦ୍ଭିଦ୍‌ପୂର୍ଣ୍ଣ ଲୋକାଳୟଶୂନ୍ୟ ଦ୍ୱୀପମାନ ରହିଅଛି । ଯେଉଁ ବାଲୁକା-ପ୍ରାଚୀର କଥା ଉଲ୍ଲିଖିତ ହୋଇ-ଅଛି, ତାହା ମଧ୍ୟରେ ଗୋଟିଏ ସଂକୀର୍ଣ୍ଣ ପଥ ବା ମୁହାଣ ଅଛି । ସେହି ମୁହାଣ ଚିଲିକାକୁ ସମୁଦ୍ର ସଙ୍ଗରେ ସଂଯୁକ୍ତ କରୁଅଛି । ସେହି ମୁହାଣ ବାଟେ ସମୁଦ୍ରରୁ ଜୁଆରପାଣି ଅତ୍ୟୁଚ୍ଚ ପ୍ରବାହାକାରରେ ଚିଲିକା ମଧ୍ୟରେ ମହାବେଗରେ ପ୍ରବେଶ କରେ ।

ଚିଲିକାରେ ଉତ୍ତରଦିଗର ବିସ୍ତାର, ଦକ୍ଷିଣଦିଗର ବିସ୍ତାର ଅପେକ୍ଷା ଅତ୍ୟନ୍ତ ଅଧିକ । ଉତ୍ତର ପ୍ରାନ୍ତରେ ଏହାର ବିସ୍ତାର ପ୍ରାୟ ୨୦ କ୍ରୋଶ; ଦକ୍ଷିଣପ୍ରାନ୍ତର ବିସ୍ତାର ୩ କ୍ରୋଶରୁ ଅଧିକ ହେବ ନାହିଁ । ବର୍ଷା କାଳ-

ରେ ଏହାର ଆୟତନ ପ୍ରାୟ ୪୫୦ ମାଇଲ, କିନ୍ତୁ ଗ୍ରୀଷ୍ମକାଳରେ ତାହା ପ୍ରାୟ ୧୦୦ ମାଇଲ କମି ଯାଏ । ଚିଲିକା ଗଭୀର ହ୍ରଦ ନୁହେଁ । ଦୁଇ ତିନୋଟି ଗଣ୍ଡ ବା ଗଭୀର ପ୍ରଦେଶ ଛାଡ଼ି ଦେଲେ, ଏହାର ଗଭୀରତା ଚାରିହାତରୁ ଅଧିକ ହେବ ନାହିଁ । ଶୀତ, ବସନ୍ତ ଓ ଗ୍ରୀଷ୍ମ କାଳରେ ଚିଲିକାର ଜଳ ସମୁଦ୍ର ଜଳ ପରି ଲୁଣିଆ ଥାଏ. କିନ୍ତୁ ବର୍ଷାକାଳରେ ଦୟା ଓ ଭାର୍ଗବୀ ନଦୀର ଜଳ ସେଥି ମଧ୍ୟରେ ମହାପ୍ରବାହରେ ପ୍ରବେଶ କରି ଲୁଣିଆ ଜଳକୁ ମଧୁର କରି ଦିଏ ।

ଚିଲିକାର ଦୃଶ୍ୟ ଅତି ବିଚିତ୍ର ଓ ସୁନ୍ଦର । ପଶ୍ଚିମ ଦିଗରେ ପ୍ରାଚୀର-କ୍ଷୁତ ଖୋଲେଇ ପର୍ବତରେ ନାସି କ୍ରମ-ନିମ୍ନ ହୋଇ ଚିଲିକାର ଜଳରାଶି ଭେଦ କରୁଅଛି ଏବଂ ଜଟିଆ ନାମକ ସୁଶ୍ୟାମଳ ଗିରି ଜଳ ମଧ୍ୟରେ ଉଭା ରହିଅଛି । ସୋଲରୀ ନାମକ ବିମାନାକୃତି ବିଶାଳ ଗିରି ଆପଣାର ସ୍ନିଗ୍ଧ ଉଦାର ଶୋଭା ପ୍ରକାଶ କରୁଅଛି । ପାରିକୁଦ, ମାଲୁଦ ପ୍ରଭୃତି ଜଳ ମଧ୍ୟସ୍ଥିତ ଦ୍ୱୀପପୁଞ୍ଜ, ନଳବନ ଓ ଶସ୍ୟକ୍ଷେତ୍ରର ଶୋଭାରେ ଶୋଭିତ । ହଂସ, ବକ, ହଂସରାଜ, କାଦମ୍ବ, ଚକ୍ରବାକ ପ୍ରଭୃତି ଲକ୍ଷ ଲକ୍ଷ ବିହଙ୍ଗ ଚିଲିକାର ତରଙ୍ଗ ଉପରେ ଭାସୁଅଛନ୍ତି ଅଥବା ଊର୍ଦ୍ଧ୍ୱରେ ଉଡ଼ି ହ୍ରଦକୁ ସେମାନଙ୍କର ନିସ୍ୱନ ଦ୍ୱାରା ଶବ୍ଦାୟମାନ କରୁଅଛନ୍ତି । ଲକ୍ଷ ଲକ୍ଷ ଶୁଭ୍ରବର୍ଣ୍ଣ ମତ୍ସ୍ୟ ଚିଲିକାର ଜଳରେ ଆନନ୍ଦରେ ସନ୍ତରଣ କରୁଅଛନ୍ତି । ମଗର, ଶିଶୁମାର, ସାଙ୍କୁଚ ପ୍ରଭୃତି ଜଳବାସୀ ଜୀବମାନେ ଚିଲିକାର ସଲିଳରେ ଏଣେ ତେଣେ ବିଚରଣ କରୁଅଛନ୍ତି । ଚିଲିକା ଏହିପରି ନାନା ଶୋଭାର ଆଧାର ହୋଇ ଦର୍ଶକର ମନ ହରଣ କରୁ-ଅଛି । ନାରିକେଳ, ଗୁବାକ, ପଣସ, ଆମ୍ର, ତାଳ, ତମାଳ, ନାଗେଶ୍ୱର, ଚମ୍ପକ, ଅଶୋକ, କଦମ୍ବ, ବଟ, ଅଶ୍ୱତ୍ଥ, ଶାଲ୍ମଳୀ, ବିଲ୍ୱ ପ୍ରଭୃତି ବୃକ୍ଷମାଳାରେ ଶୋଭିତ ହୋଇ, ତଟବର୍ତ୍ତୀ ଗ୍ରାମମାନ ସୁଶ୍ୟାମଳ ଓ ସ୍ନିଗ୍ଧ ଦିଶୁଅଛି । କବିବର ରାଧାନାଥ ଚିଲିକାକୁ ଶୋକ-ପାଶୋରା

ଅସ୍ପୃଶ୍ୟଭୂବନ ଓ ପ୍ରକୃତିର ଗୃହରୁ ତପଃଶାଳା ବୋଲି ବର୍ଣ୍ଣନା କରି ଅଛନ୍ତି ।

## ଜନ୍ମ ମରଣ ।

ଜନନୀ ଗର୍ଭୁଁ ଯେଉଁକ୍ଷଣି
ଜନ୍ମ ଲଭିଲ ଏ ଧରଣୀ ।

ତୁମ୍ଭଙ୍କୁ ଦେଖି ହର୍ଷଭରେ
ହସିଲେ କେତେ ନାରୀ ନରେ ।

କିନ୍ତୁ ହେ ତୁମ୍ଭେ ମାତୃକୋଳେ
କ୍ରନ୍ଦନ କଲ ମହାରୋଳେ ।

ଏବେ ଦୁର୍ଲ୍ଲଭ ଏ ଜୀବନ
ଏମନ୍ତେ କର ହେ ଯାପନ ।

ଯେପରି ହେ ଶାନ୍ତଭାବେ ବସି
ଆନନ୍ଦେ ତୁମ୍ଭେ ହସି ହସି,

ମୁଦିବ ଅନ୍ତେ ବେନି ଡୋଳେ,
କିନ୍ତୁ କାନ୍ଦିବେ ମହାରୋଳେ,

ଶୋକେ ଆକୁଳ ନରନାରୀ
ନୟନୁ ଢାଳି ଅଶ୍ରୁବାରି ।

## ବିଧିବିଧାନ ।

(ଭାଗବତ ବୃତ୍ତ)

ବିଧି ବିଧାନ ପୁଣ୍ୟମୟ
ଗାଅ ହେ ସେହି ବିଧି–ଜୟ ।

ମଙ୍ଗଳ ମୟ ସେ ବିଧାନ
ମହିମା ତାର କର ଧ୍ୟାନ ।
କୋଟି ଭୁବନ ପଦେ ଯାର
ଆନନ୍ଦେ କରେ ହେ ଜୁହାର ।
ସେ ମହାବିଶ୍ୱ ବଳୀୟାର,
ହେଳ ହେ ନରେ ବାରମ୍ବାର ।
ସେହିତ ଧର୍ମ ସନାତନ
ଧରି ରଖିଛି ଏ ଭୁବନ ।
ସେ ଧର୍ମ ପଥ ମଧୁମୟ
ତାହାକୁ କର ହେ ଆଶ୍ରୟ ।
ଅଧର୍ମ ପଥ ପରିହରି
ଦୃଢ଼ ବିଶ୍ୱାସ ହୃଦେ ଧରି ।
ସମ୍ପଦେ ଅବା ବିପଦରେ
ଧର୍ମେ ନ ହୁଡ଼ କେଭେ ନରେ ।
ଯେ ଜନ ଧର୍ମ ଆଚରଇ
ଧନ୍ୟ ଧନ୍ୟ ସେ ପାପଜୟୀ !
ଧନ୍ୟ ବିଧାନ ବିଧାତାର
ତା ପଦେ କୋଟି ନମସ୍କାର ।

## ଆକାଶମଣ୍ଡଳ ।

ଆମ୍ଭମାନଙ୍କ ମସ୍ତକ ଉପରେ ଏହି ଯେ ଅକାଶ ମଣ୍ଡଳ ସର୍ବଦା ବିସ୍ତାରିତ ରହିଅଛି, ତାହା କି ପ୍ରକାଣ୍ଡ! ଏହାର ଆଦ ଅନ୍ତ କାହିଁ? ଏହି ଯେ ଦିବସରେ ସୂର୍ଯ୍ୟ, ରଜନୀରେ ଚନ୍ଦ୍ର ତାରା, ଆମ୍ଭମାନଙ୍କର ଦୃଷ୍ଟିଗୋଚର ହେଉଅଛନ୍ତି, ଏ ଗୁଡ଼ିକ କି ବସ୍ତୁ? କପରି ଆକାଶ

ମଧ୍ୟରେ ଏଗୁଡିକ ସ୍ଥାପିତ ରହିଅଛି ? ଏହି ପ୍ରଶ୍ନ ଗୁଡିକ ମାନବ ମନରେ ବାରମ୍ବାର ଉପସ୍ଥିତ ହୁଏ ।

ଆମ୍ଭମାନଙ୍କର ବାସସ୍ଥାନ ଏହି ପୃଥିବୀ କି ବୃହତ୍ ! କେଉଁଠାରେ ଉତ୍ତୁଙ୍ଗ ପର୍ବତମାଳା, କେଉଁଠାରେ ଗମ୍ଭୀର ନିର୍ଘୋଷକାରୀ ମହା-ସମୁଦ୍ର, କେଉଁଠାରେ ଭୟଙ୍କର ଅଗ୍ନେୟଗିରି, କେଉଁଠାରେ ନଦୀ ବା ହ୍ରଦ, କାହିଁ ଅବା ତରୁ-ଲତା-ଶୋଭିତ ସମତଳ ଭୂମି ଏହାର ସୌନ୍ଦର୍ଯ୍ୟ ସମ୍ପାଦନ କରୁଅଛନ୍ତି । କେବଳ ଏହି ପୃଥିବୀର ବିଶାଳତା ଓ ବିଚିତ୍ର ଶୋଭାର ବିଷୟ ଚିନ୍ତା କଲେ ବିସ୍ମୟାଭିଭୂତ ହେବାକୁ ହୁଏ । ପୁଣି ଯେତେବେଳେ ପୃଥିବୀଠାରୁ କୋଟି ଗୁଣରେ ବୃହତ୍ତର ଲକ୍ଷ ଲକ୍ଷ ପଦାର୍ଥ ଆକାଶ ମଣ୍ଡଳରେ ରହିଅଛି ବୋଲି ଆମ୍ଭେମାନେ ଜାଣିପାରୁ, ସେତେବେଳେ ଆକାଶମଣ୍ଡଳ କି ପ୍ରକାଣ୍ଡ ତାହା ଭାବି ଆମ୍ଭେମାନେ ଆଶ୍ଚର୍ଯ୍ୟ ଭାବରେ ସ୍ତବ୍ଧ ହୋଇ ଯାଉଁ ।

ବିଶ୍ୱପତି ପରମେଶ୍ୱର, ଏହି କ୍ଷୁଦ୍ର ମାନବ ମନରେ ଅନୁସନ୍ଧାନ କରି ଜାଣିବାର ପ୍ରବୃତ୍ତି ଦେଇଅଛନ୍ତି । ସେ ଯେପରି ଏହାର ବିଶାଳତା ଦେଖି ବିସ୍ମିତ ହୁଏ, ସେହିପରି ଏହାର ବିବରଣ ଜାଣିବା ପାଇଁ ଉତ୍ସୁକ ହୁଏ । ବହୁ ପୁରାକାଳରୁ ଆଜି ପର୍ଯ୍ୟନ୍ତ ଏହି ଆକାଶର ବିବରଣ ଜାଣିବା ପାଇଁ, କେତେ ବ୍ୟକ୍ତି ପ୍ରାଣପଣ ଚେଷ୍ଟା କରି ଆସୁଅଛନ୍ତି, ଏହି ଚେଷ୍ଟା ଦ୍ୱାରା ଅନେକ ଆଶ୍ଚର୍ଯ୍ୟଜନକ ବିବରଣ ଜଣା ଯାଇଅଛି ।

ମେଘଶୂନ୍ୟ ରାତିରେ ଆକାଶମଣ୍ଡଳକୁ ଅନାଇଲେ ଅସଂଖ୍ୟ ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ଜ୍ୟୋତିର୍ବିନ୍ଦୁ ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୁଏ । ଏହି ଜ୍ୟୋତିର୍ବିନ୍ଦୁ ଗୁଡିକୁ ନକ୍ଷତ୍ର ଓ ଗ୍ରହ ବୋଲାଯାଏ । ଯେଉଁ ସୂର୍ଯ୍ୟ ପ୍ରତିଦିନ ଆମ୍ଭମାନଙ୍କୁ ଆଲୋକ ଦେଉଅଛି, ତାହା କ୍ଷୁଦ୍ର ଦିଶିଲେହେଁ ପୃଥିବୀ ଅପେକ୍ଷା ବହୁ ଲକ୍ଷ ଗୁଣ ବୃହତ୍ତର ଅଟେ । ସେହିପରି ନକ୍ଷତ୍ରମାନେ ବହୁପରି କ୍ଷୁଦ୍ର ଦିଶିଲେହେଁ, ସେମାନଙ୍କ ମଧ୍ୟରୁ ବହୁସଂଖ୍ୟକ ନକ୍ଷତ୍ର

ସୂର୍ଯ୍ୟ ଅପେକ୍ଷା ମଧ୍ୟ ବୃହତ୍ତର । ବହୁଦୂରରେ ଥିବାରୁ ସେମାନେ ଆମ୍ଭମାନଙ୍କୁ ଏତେ କ୍ଷୁଦ୍ର ବୋଲି ବୋଧ ହେଉଅଛନ୍ତି । ଆମ୍ଭମାନଙ୍କର ପୃଥିବୀ ସୂର୍ଯ୍ୟର ଚତୁର୍ଦ୍ଦିଗରେ ପରିଭ୍ରମଣ କରେ, ଅତଏବ ତାହାକୁ ଗ୍ରହ ବୋଲିଯାଏ । ପୃଥିବୀପରି ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି ପ୍ରଭୃତି ଅନେକ ଗ୍ରହ ସୂର୍ଯ୍ୟଙ୍କୁ ପ୍ରଦକ୍ଷିଣ କରୁଅଛନ୍ତି । ସେମାନେ ମଧ୍ୟ ଗ୍ରହ ନାମରେ ପରିଚିତ ।

ପୃଥିବୀ ଗୋଟିଏ ଗ୍ରହ । ପୃଥିବୀ ରୂପ ଗ୍ରହର ଚତୁର୍ଦ୍ଦିଗରେ ଚନ୍ଦ୍ର ଭ୍ରମଣ କରେ ଚନ୍ଦ୍ରକୁ ଉପଗ୍ରହ ବୋଲିଯାଏ । ଚନ୍ଦ୍ର ପୃଥିବୀ ଅପେକ୍ଷା ବହୁ ପରିମାଣରେ କ୍ଷୁଦ୍ର । ଚନ୍ଦ୍ରର ନିଜର ଆଲୋକ ନାହିଁ । ସେ ସୂର୍ଯ୍ୟ-ଠାରୁ ଆଲୋକ ଗ୍ରହଣ କରି ଉଜ୍ଜ୍ୱଳ ଦିଶେ । ଚନ୍ଦ୍ରର ଆଲୋକକୁ ଜ୍ୟୋତ୍ସ୍ନା ବା ଚନ୍ଦ୍ରିକା ବା କୌମୁଦୀ ବୋଲିଯାଏ ।

ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର ଛଡ଼ା ଆହୁରି ଏକ ପ୍ରକାର ଜ୍ୟୋତିର୍ମୟ ପଦାର୍ଥ ସମୟେ ସମୟେ ଆକାଶ ମଣ୍ଡଳରେ ଦେଖାଯାଏ । ଏହାକୁ ଧୂମକେତୁ ବୋଲନ୍ତି ଏହାର ଆକୃତି ନକ୍ଷତ୍ରମାନଙ୍କ ଆକୃତିରୁ ଭିନ୍ନ । ଏହାର ଆକୃତି ଦେଖିଲେ ବୋଧ ହୁଏ ଯେପରି ଗୋଟିଏ ନକ୍ଷତ୍ର ସହିତ ଗୋଟିଏ ଜ୍ୟୋତିର୍ମୟ ପୁଚ୍ଛ ସଂଲଗ୍ନ ରହିଅଛି । ଲୋକେ ଧୂମକେତୁକୁ ଲଞ୍ଜାତାରା ମଧ୍ୟ କହନ୍ତି ।

ଆକାଶ ମଣ୍ଡଳ ଅସୀମ । ଅସଂଖ୍ୟ ଅସଂଖ୍ୟ ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର ଏହା ମଧ୍ୟରେ ପରିଭ୍ରମଣ କରୁଅଛନ୍ତି । ବହୁ ପୂର୍ବକାଳରୁ ଆଜି ପର୍ଯ୍ୟନ୍ତ ନାନା ଦେଶର ଜ୍ଞାନୀ ବ୍ୟକ୍ତିମାନେ ଆକାଶ ମଣ୍ଡଳର ବିବରଣ ଜାଣିବା ପାଇଁ ଅବିଶ୍ରାନ୍ତ ଚେଷ୍ଟା କରି ଆସୁଅଛନ୍ତି । କିନ୍ତୁ ଆଜି ପର୍ଯ୍ୟନ୍ତ ଏହା ବିଷୟରେ ଅତ୍ୟଳ୍ପ ମାତ୍ର ବିବରଣ ଜଣା ଯାଇଅଛି । କେବଳ ତାହାକୁଇ ଆଲୋଚନା କଲେ ସୃଷ୍ଟିକର୍ତ୍ତା ପରମେଶ୍ୱରଙ୍କର ଅପାର ମହିମା ଦେଖି କାହାର ହୃଦୟ ବିସ୍ମୟରେ ସ୍ତବ୍ଧ ନ ହେବ ?

# ପୃଥିବୀ ପ୍ରତି ।

(ରାଗ ବଙ୍ଗଳାଶ୍ରୀ)

ତୁହି ମା ଧରଣୀ　　ଜନନୀ ମୋହର
　ଧରିଛୁ ମା ମୋତେ କୋଳେ ;
ଲୋଟୁଅଛି ସିନ୍ଧୁ　　ଚରଣେ ତୋହର
　ଆହା କି ଉଲ୍ଲାସ-ଭୋଳେ ।
ରହିଛୁ ଅନାଇ　　ଅନନ୍ତ ଗଗନେ
　ଆନନ୍ଦରେ ଅନୁକ୍ଷଣ ;
ସେ ମହା ଗଗନ　　ମହାଆନନ୍ଦରେ
　ନିରେଖଇ ତୋ ଆନନ ।
ବିମଳ ପ୍ରଭାତେ　　ପୁଣ୍ୟ ସାୟଂକାଳେ
　ଦିବାନିଶି ଅବିରଳ,
ତୋ ଶିରେ ଗଗନ　　ଢାଳେ ଶୁଭ୍ରାଲୋକ
　ଅବା ଛାୟା ସୁଶୀତଳ ।
ତୋହର ସନ୍ତାନ　　ଅଟେଁ ମୁଁ ଜନନୀ
　ତୋର ଦରଶନେ ପ୍ରାଣ
ଉଛୁଳି ପଡ଼ଇ　　ଆନନ୍ଦ-ଉଲ୍ଲାସେ
　ମଣଇ ମୁଁ ଭାଗ୍ୟବାନ ।
କେତେ କେତେ ଶୋଭା　　ଧରିଛୁ ଜନନୀ
　ତୋହର ବିପୁଳ ଦେହେ ;
ମାତୃସ୍ତନ ସମ　　ନୀଳପର୍ବତରୁ
　ନିର୍ଝର ଝରଇ ସ୍ନେହେ ।

ସୁଧାଧାର ସମ ସତତର ସ୍ରୋତ
ବହୁଅଛି ତୋ ବକ୍ଷରେ ;
ସେ ଅମୃତ ପାନ ସ୍ଥାବର ଜଙ୍ଗମ
କରୁଛନ୍ତି କି ସୁଖରେ ।
ନର ପଶୁ ପକ୍ଷୀ କୀଟ ତରୁ ଲତା
କାମ ଧେନୁ ତୁ ସବୁର ;
ତୋହର ପ୍ରସାଦେ ସକଳ କାମନା
ଯାଉଅଛି ମା ଗୋ ପୂର ।
ସ୍ନେହେ ରୋମାଞ୍ଚିତ ଦୁର୍ବାଦଳ-ମୟ
ତୋ ଶ୍ୟାମଳ ଅଙ୍କ-ସ୍ଥଳ ;
ସେ କୋମଳ କୋଳ ଦେଖିଲେ ନୟନେ
ହୃଦ ହୁଏ ସୁଶୀତଳ ।
ସୁଗନ୍ଧି କୁସୁମ ସୁଧାମୟ ଫଳ
ରଖିଛୁ ମା ବସୁମତି
ବନେ ଉପବନେ ତରୁ ଲତାଡାଳେ
ସଜାଇ ଯତନେ ଅତି ।
କାହାର ଆଦେଶେ କରୁଛୁ ମା ଏତେ
ଜୀବପାଇଁ ଆୟୋଜନ,
ସେ ଆଦ୍ୟ-ଜନନୀ ଦରଶନ ଲାଗି
ବ୍ୟାକୁଳ ସଦା ମୋ ମନ ।

## ମହାରାଣୀ ଭିକ୍ଟୋରିୟା ।

ବ୍ରିଟିଶ ରାଜ୍ୟର ଅଧୀଶ୍ୱରୀ ମହାରାଣୀ ଭିକ୍ଟୋରିୟା ଦେବୀ ଆଉ ଇହ-ଲୋକରେ ନାହାନ୍ତି ; କିନ୍ତୁ ତାହାଙ୍କର ପବିତ୍ରଯଶ ଏହି ପୃଥିବୀରେ ଚିରକାଳ ରହିବ ।



ମହାରାଣୀ ଭିକ୍ଟୋରିୟା ।

୧୮୧୯ ଖ୍ରୀଷ୍ଟାବ୍ଦରେ ମହାରାଣୀ ଭିକ୍ଟୋରିୟା ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ଜନ୍ମଦିବସ ସହିତ ମୃତ୍ୟୁଦିବସର ତୁଳନା କଲେ କଣ ଦେଖା-ଯାଏ? ଯେଉଁ ଦିନ ସେ ଏହି ପୃଥିବୀକୁ ଆଗମନ କରିଥିଲେ ସେ ଦିନ କେବଳ ତାହାଙ୍କର ପିତା ମାତା ଓ ଆତ୍ମୀୟ ସ୍ୱଜନ ବର୍ଗ ଆନନ୍ଦିତ ହୋଇଥିଲେ କିନ୍ତୁ ଯେଉଁଦିନ "ମହାରାଣୀ ଭିକ୍ଟୋରିୟା ଆଉ ଏ ଜଗ-ତରେ ନାହାନ୍ତି" ଏହି ସଂବାଦ ଦେଖୁଁ ଦେଖୁଁ ସର୍ବତ୍ର ବ୍ୟାପ୍ତ ହୋଇ ଗଲା ; ରାଜା, ମହାରାଜା, ଧନୀ, ନିର୍ଧନ, ଦୁଃଖୀ, ଦରିଦ୍ର, ଅଗଣ୍ୟ ନରନାରୀ ହାୟ ହାୟ କରିବାକୁ ଲାଗିଲେ । ଧନୀର ପ୍ରାସାଦ ଓ ଦରିଦ୍ରର କୁଟୀର ସର୍ବତ୍ର ମହାରାଣୀଙ୍କର ପବିତ୍ର ନାମ ଧ୍ୱନିତ ହେବାକୁ ଲାଗିଲା । ଜାତି, ଦେଶ ଓ ଧର୍ମର ପ୍ରଭେଦ ପାସୋରି ସମଗ୍ର ପୃଥିବୀର ଅଧିବାସୀମାନେ ମହାରାଣୀଙ୍କ ମୃତ୍ୟୁରେ ଶୋକ ପ୍ରକାଶ କଲେ । ଜଣେ ନାରୀର ମୃତ୍ୟୁରେ ସମଗ୍ର ପୃଥିବୀ ଶୋକାର୍ତ୍ତ, ଏଥିର କାରଣ କଣ? ମହାରାଣୀ କେବଳ ବିଶାଳ ସାମ୍ରାଜ୍ୟର ଅଧୀଶ୍ୱରୀ ଥିଲେ ବୋଲି କି ଏପରି ଶୋକ-ପ୍ରକାଶ ଦେଖାଗଲା? ନା, କେବଳ ସେଥିପାଇଁ ନୁହେଁ; ଏହାଙ୍କ ପରି ସତୀ, ପତିପ୍ରାଣା, ଦୟାଶୀଳା, ସର୍ବଗୁଣ-ସମନ୍ୱିତା ନାରୀ ଜନ୍ମଗ୍ରହଣ କରି ନାହାନ୍ତି, କହିଲେ ଅତ୍ୟୁକ୍ତି ହେବ ନାହିଁ । ସଂକ୍ଷେପରେ ତାହାଙ୍କର ଜୀବନବୃତ୍ତାନ୍ତ ନିମ୍ନରେ ବିବୃତ ହେଉଅଛି ।

ମହାରାଣୀ ଭିକ୍ଟୋରିୟା ଇଂଲଣ୍ଡର ରାଜା ତୃତୀୟ ଜର୍ଜ୍ଜଙ୍କର ଚତୁର୍ଥ ପୁତ୍ରଙ୍କର ଏକମାତ୍ର କନ୍ୟା । ମହାରାଣୀ ଶୈଶବରୁ ପିତୃହୀନା ହୋଇଥିଲେ । ପିତୃବ୍ୟମାନଙ୍କର ସନ୍ତାନ ନ ଥିବାରୁ ସେ ରାଜସିଂହାସନର ଅଧିକାରିଣୀ ହେଲେ । ଭିକ୍ଟୋରିୟା ବାଲ୍ୟକାଳରେ ତାହାଙ୍କର ବୁଦ୍ଧିମତୀ ଓ ଗୁଣବତୀ ଜନନୀଙ୍କର ଯତ୍ନରେ ସୁଶିକ୍ଷିତା ହୋଇଥିଲେ । ୧୮୩୭ ଖ୍ରୀଷ୍ଟାବ୍ଦରେ ତାହାଙ୍କର ପିତୃବ୍ୟ ରାଜା ଚତୁର୍ଥ ଉଇଲିୟମଙ୍କର ମୃତ୍ୟୁ ହେଲା । ସେ ଦିନର ଗୋଟିଏ ଘଟନା ଏକାନ୍ତ ହୃଦୟସ୍ପର୍ଶିନୀ । ରାତ୍ରିର ଶେଷଭାଗରେ

ଉଇଲିୟମଙ୍କର ମୃତ୍ୟୁ ହେବାରୁ, ସେହିକ୍ଷଣି ଇଂଲଣ୍ଡର ପ୍ରଧାନ ଧର୍ମ-ଯାଜକ ଓ ଜଣେ ପ୍ରଧାନ ରାଜପୁରୁଷ ଏହି ସମ୍ବାଦ-ଜଣାଇବା ପାଇଁ ଭିକ୍ଟୋରିୟାଙ୍କ ନିକଟକୁ ଗମନ କଲେ । ସେତେବେଳେ ଭିକ୍ଟୋରିୟା ନିଜର ଶୟନାଗାରରେ ନିଦ୍ରିତା ଥିଲେ । ପରିଚାରିକା ତାହାଙ୍କୁ ଉଠାଇ ଧର୍ମଯାଜକ ଓ ପ୍ରଧାନ ରାଜକର୍ମଚାରୀଙ୍କର ଆଗମନ ବାର୍ତ୍ତା ଜଣାଇଲାରୁ, ସେ ସେମାନଙ୍କର ନିକଟରେ ଉପସ୍ଥିତ ହୋଇ ଶୁଣିଲେ ଯେ ସେ ବ୍ରିଟିଶ-ରାଜ୍ୟର ଅଧୀଶ୍ୱରୀ ହୋଇ ଅଛନ୍ତି । ଏହି କଥା ଶୁଣିଲାକ୍ଷଣି ସେ ଧର୍ମ-ଯାଜକଙ୍କ ଆଡ଼କୁ ଅଶ୍ରୁପୂର୍ଣ୍ଣ ନୟନରେ ଅନାଇଁ କହିଲେ "ଆପଣ ମୋ ନିମନ୍ତେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରନ୍ତୁ ।" ଧର୍ମଯାଜକ ସେହିକ୍ଷଣି ପ୍ରାର୍ଥନା କଲେ ଓ ଭିକ୍ଟୋରିୟା ଭକ୍ତିପୂର୍ଣ୍ଣଚିତ୍ତରେ ଜାନୁପାତ ପୂର୍ବକ ସେ ପ୍ରାର୍ଥନାରେ ଯୋଗ ଦେଲେ । ସପ୍ତଦଶବର୍ଷୀୟା ବାଳିକା ପକ୍ଷରେ ନିଜ ନୂତନ ଜୀବନର ମହାଦାୟିତ୍ୱ ଏପରି ଗମ୍ଭୀରଭାବରେ ହୃଦୟଙ୍ଗମ କରି ଈଶ୍ୱରଙ୍କର ଶରଣାପନ୍ନ ହେବା କି ଅତିସୁନ୍ଦର ଓ ମନୋହର କଥା ନୁହେଁ ?

ଭିକ୍ଟୋରିୟା ଏତେ ଅଳ୍ପ ବୟସରେ ରାଜ୍ୟଭାର ଗ୍ରହଣ କଲେ ଦେଖି ଅନେକେ ଆଶଙ୍କା ପ୍ରକାଶ କରିଥିଲେ । କିନ୍ତୁ ଭିକ୍ଟୋରିୟା ଏପରି ସୁଚାରୁରୂପେ ରାଜକାର୍ଯ୍ୟ ନିର୍ବାହ କରିବାକୁ ଲାଗିଲେ ଯେ ଅତ୍ୟଳ୍ପଦିନ ମଧ୍ୟରେ ସମସ୍ତଙ୍କର ଆଶଙ୍କା ଦୂରୀଭୂତ ହେଲା ।

ମହାରାଣୀ ଭିକ୍ଟୋରିୟା ଏକବର୍ଷ ରାଜତ୍ୱ କରିବା ଉତ୍ତାରୁ ତାହାଙ୍କର ରାଜ୍ୟାଭିଷେକ ହୋଇଥିଲା । ଓ୍ୱେଷ୍ଟମିନିଷ୍ଟର ଏବି ନାମକ ଗିର୍ଜାରେ ଯଥାମତେ ଅଭିଷେକ କାର୍ଯ୍ୟ ସମାପ୍ତ ହେଲାଉତ୍ତାରୁ ମହାରାଣୀଙ୍କୁ ସିଂହା-ସନରେ ବସାଇ ରାଜ୍ୟର ପ୍ରଧାନ ପ୍ରଧାନ ବ୍ୟକ୍ତିମାନେ, ଏକେ ଏକେ ଆସି ତାହାଙ୍କୁ ଅଭିବାଦନ କରିଥିଲେ । ଜଣେ ନବତି ବର୍ଷ ବୟସ୍କ ବୃଦ୍ଧ କୁଳୀନ ସେହି ସମୟରେ ଅଭିବାଦନ କରିବାକୁ ଯାଇ ଗୋଡ ଖସିଯିବାରୁ

ପଡ଼ିଗଲେ । ମହାରାଣୀ ନିଜେ ସିଂହାସନରୁ ଉଠି ବୃଦ୍ଧଙ୍କର ହାତ ଧରି, ତାହାଙ୍କୁ ସମାଦର ପୂର୍ବକ ଉଠାଇ ଦେଇଥିଲେ । ତାହାଙ୍କର ଏହିପ୍ରକାର ସହୃଦୟତା ଦେଖି ସମସ୍ତେ ମୁଗ୍ଧ ହୋଇଥିଲେ ।

୧୮୪୦ ଖ୍ରୀଷ୍ଟାବ୍ଦରେ ସେକ୍ସକୋବର୍ଗ-ନାମକ ସ୍ଥାନର ସର୍ବଗୁଣାନ୍ୱିତ ରାଜକୁମାର ଆଲବାର୍ଟଙ୍କ ସଙ୍ଗରେ ମହାରାଣୀଙ୍କର ବିବାହ ହୋଇଥିଲା । ଏହି ବିବାହରେ ନିଜେ ମହାରାଣୀ ଏବଂ ତାହାଙ୍କର ଆତ୍ମୀୟ ସ୍ୱଜନ ଓ ପ୍ରଜାସାଧାରଣ ସମସ୍ତେ ସୁଖୀ ହୋଇଥିଲେ । ମହାରାଣୀ, ସ୍ୱାମୀଙ୍କର ପରାମର୍ଶ ଅନୁସାରେ ରାଜକାର୍ଯ୍ୟ ନିର୍ବାହ କରି ଦେଶର ଅନେକ ଉପକାର କରିଥିଲେ । ଆଲବାର୍ଟ, ସକଳ ବିଷୟରେ ମହାରାଣୀଙ୍କର ଉପଯୁକ୍ତ ପତି ହୋଇଥିଲେ । ଏହି ସୁଖୀ ରାଜଦମ୍ପତି ଚାରି ପୁଅ ଓ ପାଞ୍ଚ କନ୍ୟାଙ୍କର ପିତା ମାତା ହୋଇ ୨୧ ବର୍ଷ ସୁଖରେ ବାସ କଲେ । ସେମାନଙ୍କର ପ୍ରତ୍ୟେକ କାର୍ଯ୍ୟ ଗୁରୁତର ଦାୟିତ୍ୱଜ୍ଞାନ ଓ ପ୍ରଗାଢ଼ ଈଶ୍ୱରନିଷ୍ଠାର ପରିଚୟ ପ୍ରଦାନ କରଇ । ମହାରାଣୀ ଏତେ ବଡ଼ ବିସ୍ତୀର୍ଣ୍ଣ ସାମ୍ରାଜ୍ୟର ସର୍ବବିଧ କଲ୍ୟାଣଚିନ୍ତା କରି ସର୍ବଦା ତାହାର ମଙ୍ଗଳ ସାଧନରେ ଯତ୍ନବତୀ ଥିଲେ । ରାଜକାର୍ଯ୍ୟରେ ତାହାଙ୍କର ପ୍ରଗାଢ଼ ମନୋଯୋଗ ଥିଲା, ଅଥଚ ପାରିବାରିକ କର୍ତ୍ତବ୍ୟସାଧନରେ କିଛି ମାତ୍ର ତ୍ରୁଟି ହେଉ ନ ଥିଲା । ଅଧିକାଂଶ ସ୍ଥାନରେ ଦେଖାଯାଏ ଯେ ଧନୀ ପରିବାରର ରମଣୀମାନେ ଭୋଗ-ବିଳାସ-ଆମୋଦ-ପ୍ରମୋଦରେ ମାତି ପାରିବାରିକ କର୍ତ୍ତବ୍ୟପାଳନରେ ଅବହେଳା କରନ୍ତି । କିନ୍ତୁ ମହାରାଣୀ ଗୃହକାର୍ଯ୍ୟରେ ଏପରି ସୁବ୍ୟବସ୍ଥା କରିଥିଲେ ଯେ, ଇଉରୋପର ଅପରାପର ଦେଶର ରାଜାମାନେ ଇଂଲଣ୍ଡକୁ ବୁଲିବାକୁ ଆସି ତାହାଙ୍କର ଗୃହର ଶୃଙ୍ଖଳା ଓ ଶୋଭା ଏବଂ ତାହାଙ୍କର ପତିଭକ୍ତି ଓ ସନ୍ତାନବାତ୍ସଲ୍ୟ ଦେଖି ମୁଗ୍ଧ ହୋଇ ଯାଉଥିଲେ । ମହାରାଣୀ ତାହାଙ୍କର ସନ୍ତାନମାନଙ୍କଠାରୁ ଯେପରି ଶ୍ରଦ୍ଧା ଭକ୍ତି ପାଇଥିଲେ, ଏପରି ପ୍ରାୟ ଦେଖାଯାଏ ନାହିଁ । ଏପରି ମାତୃଭକ୍ତିର ପ୍ରଧାନ କାରଣ ଏହି ଯେ ନିଜେ

ମହାରାଣୀ ପୁତ୍ର କନ୍ୟାମାନଙ୍କର ପାଳନ ଓ ସୁଶିକ୍ଷା ବିଷୟରେ ସର୍ବଦା ଯତ୍ନବତୀ ଥିଲେ ।

ଏହିପରି ମହାରାଣୀ ରାଜ୍ୟର ମଙ୍ଗଳ ସାଧନ କରି ସ୍ୱାମୀ ଓ ସନ୍ତାନ-ମାନଙ୍କୁ ନେଇ ପରମସୁଖରେ ବହୁବର୍ଷ ଯାପନ କଲେ । କିନ୍ତୁ ତାହାଙ୍କୁ ମଧ୍ୟ-ଜୀବନରେ ଶୋକ ଉପରେ ଶୋକର ଦାରୁଣ ଦୁଃଖ ଭୋଗ କରି-ବାକୁ ହୋଇଥିଲା । ୧୮୬୧ ଖ୍ରୀଷ୍ଟାବ୍ଦରେ ତାହାଙ୍କର ପରମାରାଧ୍ୟା ମାତୃଦେବୀ ଭବଧାମ ପରିତ୍ୟାଗ କରି ଗଲେ । ଭିକ୍ଟୋରିଆ ଶୈଶବରୁ ପିତୃହୀନା, ସୁତରାଂ ପିତୃସ୍ନେହ କିପରି ଜାଣି ନ ଥିଲେ । ମାତାଙ୍କୁ ହରାଇ ସେ ଅତ୍ୟନ୍ତ କାତର ହୋଇ ପଡ଼ିଲେ, ପୁଣି ଅଳ୍ପଦିନ ପରେ ତାହାଙ୍କର ଜୀବନବ୍ୟାପୀ ସର୍ବ ପ୍ରଧାନ ଦୁଃଖର ଆରମ୍ଭ ହେଲା । ତାହାଙ୍କର ପ୍ରିୟତମ ସ୍ୱାମୀ ରାଜକୁମାର ଆଲବାର୍ଟ ମଧ୍ୟ ଇହଲୋକ ପରିତ୍ୟାଗ କରି ଗଲେ । ମହାରାଣୀଙ୍କର ଜୀବନ ସେହିଦିନୁଁ ଶୋକର ଛାୟାରେ ଆଚ୍ଛନ୍ନ ରହିଲା । ସେହିଦିନୁଁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମହାରାଣୀ ପବିତ୍ର ବୈଧବ୍ୟ-ବ୍ରତ ଅତି ପବିତ୍ର ଭାବରେ ପାଳନ କରିଥିଲେ । ପତିଙ୍କର ବିୟୋଗଦିନରୁ ସେ କୌଣସି ପ୍ରକାର ଆମୋଦ ପ୍ରମୋଦରେ ଯୋଗ ଦେଇ ନ ଥିଲେ । ଏପରି କି ତାହାଙ୍କର ଜ୍ୟେଷ୍ଠପୁତ୍ର ଆମ୍ଭମାନଙ୍କର ବର୍ତ୍ତମାନ ରାଜା ସପ୍ତମ ଏଡ଼ୱାର୍ଡଙ୍କର ବିବାହର ଆମୋଦରେ ସୁଦ୍ଧା ସେ ଯୋଗ ଦେଇ ନ ଥିଲେ । ତାହାଙ୍କର ସୁଯୋଗ୍ୟ ପୁତ୍ରବଧୂ, ଆମ୍ଭମାନଙ୍କର ବର୍ତ୍ତମାନ ରାଣୀଙ୍କ ପ୍ରତି ଆମୋଦ ପ୍ରମୋଦରେ ଯୋଗ ଦେବାର ଭାର ଦେଇ ମହାରାଣୀ ନିଜେ ଗମ୍ଭୀର ବୈରାଗ୍ୟବ୍ରତ ଅବଲମ୍ବନ କରିଥିଲେ । ସେ ପ୍ରତିଦିନର ଘଟନାବଳୀ ଲେଖି ରଖୁଥିଲେ; ସେହି ଦୈନିକ ଲିପି ଦେଖିଲେ ଜଣା ଯାଏ ଯେ ସେ ଦିନକ ପାଇଁ ସୁଦ୍ଧା ତାହାଙ୍କର ପତିଙ୍କୁ ବିସ୍ମୃତ ହୋଇ ନ ଥିଲେ ।

ଆମ୍ଭମାନଙ୍କର ଦେଶ ମହାରାଣୀଙ୍କର ସ୍ୱଦେଶ ନୋହିଲେହେଁ ସେ

ଆମ୍ଭମାନଙ୍କ ପ୍ରତି ସର୍ବଦା ସ୍ନେହଦୃଷ୍ଟି ରଖିଥିଲେ । ଭାରତବାସୀ ପ୍ରଜାମାନଙ୍କ ପ୍ରତି ସେ ଜନନୀ ପ୍ରାୟ ସର୍ବଦା ବାତ୍ସଲ୍ୟ ପ୍ରକାଶ କରୁଥିଲେ । ୧୮୫୮ ଖ୍ରୀଷ୍ଟାବ୍ଦରେ ମହାରାଣୀ ସାକ୍ଷାତ୍‌ଭାବରେ ଭାରତର ଶାସନଭାର ଗ୍ରହଣ କରି ଯେଉଁ ଘୋଷଣାପତ୍ର ପ୍ରଚାର କରିଥିଲେ, ତାହାର ପ୍ରତ୍ୟେକ ପଂକ୍ତିରେ ତାହାଙ୍କର ଧର୍ମଭାବ ଓ ପ୍ରଜାବାତ୍ସଲ୍ୟ ଓ ଉଦାରତା ଜାଜ୍ୱଲ୍ୟ-ମାନ ରହିଅଛି ।

ଇଂଲଣ୍ଡର ପ୍ରଚଳିତ ରାଜବିଧାନ ଅନୁସାରେ ଇଂଲଣ୍ଡର ରାଜା ବା ରାଣୀଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ ଅପରାଧୀମାନଙ୍କର ଦଣ୍ଡାଜ୍ଞାପତ୍ରରେ ସ୍ୱାକ୍ଷର କରିବାକୁ ହେଉଥିଲା । ମହାରାଣୀ ଅପରାଧୀମାନଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ କରିବାକୁ ଅତ୍ୟନ୍ତ କ୍ଳେଶ ବୋଧ କରି, ଦଣ୍ଡିତ ବ୍ୟକ୍ତିମାନଙ୍କୁ କ୍ଷମା କରି-ବାକୁ, ପାର୍ଲେମେଣ୍ଟ ମହାସଭା ରାଜକୀୟ ବିଧି ପ୍ରଣୟନ କରି ପ୍ରାଣଦଣ୍ଡାଜ୍ଞା ପତ୍ରରେ ମହାରାଣୀଙ୍କର ସ୍ୱାକ୍ଷର କରିବାର ପ୍ରଥା ରହିତ କରି ଦେଇଥିଲେ ।

ମହାରାଣୀ ଅନେକ-ସମୟରେ ରାଜଧାନୀ ପରିତ୍ୟାଗ କରି ନିର୍ଜନ ସ୍ଥାନମାନଙ୍କରେ ବାସ କରୁଥିଲେ । ସେହି ସବୁ ସ୍ଥାନରେ ନିରାଡ଼ମ୍ବର-ଭାବରେ ରହି ନିକଟବର୍ତ୍ତୀ ଗ୍ରାମମାନଙ୍କରେ ଥିବା ଦୁଃଖୀ ପ୍ରଜାମାନଙ୍କର ଗୃହକୁ ନିଜେ ଯାଇ ସେମାନଙ୍କର ଦୁଃଖହରଣ କରୁଥିଲେ । ଇତର ଜନ୍ତୁମାନେ ମଧ୍ୟ ମହାରାଣୀଙ୍କ ଦୟାରୁ ବଞ୍ଚିତ ନ ଥିଲେ । ଗୃହପାଳିତ ଜନ୍ତୁଗୁଡ଼ିକ ବୃଦ୍ଧ ଓ ଅକର୍ମଣ୍ୟ ହୋଇଗଲେ, ସେ ସେମାନଙ୍କର ସେବା-ନିମିତ୍ତ ବହୁତ ବ୍ୟବସ୍ଥା କରି ଦେଉଥିଲେ ।

ଏହିପରି ସୁଦୀର୍ଘକାଳ ନ୍ୟାୟ ଓ ଦୟାରେ ରାଜତ୍ୱ କରି ମହାରାଣୀ ଭିକ୍ଟୋରିୟା ୧୯୦୧ ଖ୍ରୀଷ୍ଟାବ୍ଦର ୨୨ ତାରିଖ ଜାନୁୟାରୀ ଦିନ ସ୍ୱର୍ଗା-ରୋହଣ କଲେ । ଆଜି ପର୍ଯ୍ୟନ୍ତ କୌଣସି ରାଜା ଏତେ ଦୀର୍ଘକାଳ ରାଜତ୍ୱ କରି ନାହାନ୍ତି । ସିଂହାସନର ଅଧିକାରିଣୀ ହୋଇଅଛନ୍ତି, ଏହି ସମ୍ବାଦ ପାଇଲାକ୍ଷଣି ମହାରାଣୀ, ପ୍ରଭୁଙ୍କ ଆଶୀର୍ବାଦ ଭିକ୍ଷା କରିଥିଲେ । ପ୍ରଭୁଙ୍କ

ଆଶୀର୍ବାଦରୁ ତାହାଙ୍କର ରାଜତ୍ୱରେ ସମସ୍ତେ ସୁଖୀ ହୋଇଥିଲେ । ତାହାଙ୍କର ବିଶାଳ ସାମ୍ରାଜ୍ୟ ମଧ୍ୟରେ ତାହାଙ୍କର ଶାସନ ସମୟରେ ଅଶେଷ ପ୍ରକାର ଉନ୍ନତି ସାଧିତ ହୋଇଅଛି । ଜ୍ଞାନ, ବିଜ୍ଞାନ, ଶିଳ୍ପ ପ୍ରଭୃତିର ଯେପରି ଉନ୍ନତି ହୋଇଅଛି ସେପରି ଉନ୍ନତି ପୂର୍ବେ କେବେ ଦେଖା ଯାଇ ନାହିଁ । ରେଲ୍‌ମାର୍ଗରେ ବାଷ୍ପୀୟ ରଥର ଚଳନା, ତାରଯୋଗେ ମୁହୂର୍ତ୍ତ ମଧ୍ୟରେ ସହସ୍ର ସହସ୍ର କ୍ରୋଶ ଦୂରକୁ ସମ୍ବାଦ ପ୍ରେରଣ ପ୍ରଭୃତି ଅଦ୍ଭୁତ ବ୍ୟାପାରମାନ ମହାରାଣୀଙ୍କ ରାଜତ୍ୱ ସମୟରେ ଏ ସଂସାରରେ ପ୍ରତିଷ୍ଠିତ ହେଲା । ମହାଦେବୀ ଭିକ୍ଟୋରିୟାଙ୍କର ଜୀବନଚରିତ ନାନାଘଟନାରେ ପରିପୂର୍ଣ୍ଣ, ତେଣୁ ବିଚିତ୍ର ଓ ମନୋହର ଅଟେ । ସେ ସବୁବିଷୟରେ ଆଦର୍ଶନାରୀ ଥିଲେ । କନ୍ୟାରୂପେ, ପତ୍ନୀରୂପେ, ଜନନୀରୂପେ ଏବଂ ବିଶାଳ ସାମ୍ରାଜ୍ୟର ଅଧୀଶ୍ୱରୀରୂପେ ସେ ଜଗତର ମୁଖ ଉଜ୍ଜ୍ୱଳ କରି ଯାଇ ଅଛନ୍ତି ।

## ଜନ୍ମ ଭୂମି ।

(ରାଗ ଦେଶି)

"ତୁହି ମା ଜନମଭୂମି          ପବିତ୍ର ଭାରତଭୂମି
ତୋହର ସନ୍ତାନ ଆମ୍ଭେ ଅଛୁଁ ସରବେ,
ତୋର ଶ୍ରୀଚରଣ ସେବା          ପାଇଁ ମନ ପ୍ରାଣ ଦେବା
ଗାଇବା ତୋହର ନାମ ଆନନ୍ଦରବେ ।
ତୋ ଆନନ୍ଦେ ହୋଇବା ସୁଖୀ,
କାନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ ।

ଧନ୍ୟ ମହିମା ତୋହର          ନାହିଁ ତାର ପଟାନ୍ତର
ମସ୍ତକରେ ହିମାଳୟ ପର୍ବତବର ;

ଦୁଇ ପାରୁଶେ ଜଳଧି, ବ୍ରହ୍ମପୁତ୍ର, ସିନ୍ଧୁନଦୀ,
ଚରଣରେ ବିରାଜିତ ମହାସାଗର ।
ବିନ୍ଧ୍ୟଗିରିବର କଟିରେ,
ଗଙ୍ଗା ଆଦି କେତେ ନଦୀ ଶୋଭେ ଶରୀରେ ।

ଜନମିଲେ ତୋ କୋଳରେ କେତେ ଶୂରବୀର ନରେ
ରାମଚନ୍ଦ୍ର ଭୀଷ୍ମ ଦ୍ରୋଣ କର୍ଣ୍ଣ ଅର୍ଜ୍ଜୁନ ;
ମହାକବି ବେଦବ୍ୟାସ ବାଲ୍ମୀକି କାଳିଦାସ
ଗାଇଲେ ପନ୍ଏକକଣ୍ଠେ ତୋହର ଗୁଣ ।
ଚୈତନ୍ୟାଦି ମହାତ୍ମଜନେ,
ପ୍ରଚାରିଲେ ବିଭୁନାମ ଆନନ୍ଦମନେ ।

କେତେ କେତେ ପୁଣ୍ୟବତୀ କେତେ ପତିବ୍ରତା ସତୀ
କେତେ ବୀରନାରୀ କେତେ ବୀରଜନନୀ ;
ସମସ୍ତେ ତୋର ଦୁହିତା ପଦ୍ମିନୀ, ସାବିତ୍ରୀ, ସୀତା
ଦୁର୍ଗାବତୀ ଆଦି କେତେ ବୀରରମଣୀ ।
ନମଇ ମା ଭକତିଭରେ,
ଅଧମ ଅକ୍ଷମ ସୁତ ତୋ ଚରଣରେ ।

## ସଫଳସ୍ୱପ୍ନ ।

ଏକଦା ଜଣେ ଅଶ୍ୱାରୋହୀ ଯୁବାପୁରୁଷ ମୃଗୟା ନିମିତ୍ତ ଗାନ୍ଧାର ଦେଶର ଗୋଟିଏ ନିବିଡ଼ ବନରେ ଭ୍ରମଣ କରୁଥିଲେ । ବହୁକ୍ଷଣ ବନ ମଧ୍ୟରେ ଭ୍ରମଣ କଲାଉତ୍ତାରେ ଗୋଟିଏ ବିସ୍ତୀର୍ଣ୍ଣ ପ୍ରାନ୍ତର ତାହାଙ୍କର ନୟନଗୋଚର ହେଲା । ସେ କିଛି ଦୂର ଅଗ୍ରସର ହୋଇ ଦେଖିଲେ ଯେ ପ୍ରାନ୍ତର ମଧ୍ୟରେ ଗୋଟିଏ ହରିଣୀ ତାହାର ଶାବକ

ସହିତ ତୃଣ ଭକ୍ଷଣ କରୁଅଛି । ସେ ଦ୍ରୁତପଦରେ ଯାଇ କ୍ଷୁଦ୍ର ହରିଣ ଶିଶୁଟିକୁ ଧରି ପକାଇଲେ । ହରିଣୀ ଭୟରେ କିଛି ଦୂର ପଳାଇ ଗଲା ।



ଆଜି ଉତ୍ତମ ଆହାର ମିଳିଅଛି ଏହା ମନରେ ଭାବି, ଅଶ୍ୱାରୋହୀ, ହୃଷ୍ଟଚିତ୍ତରେ ମୃଗ ଶାବକକୁ ଘୋଡ଼ାକ ଉପରେ ଥୋଇ ଅଗ୍ରସର ହେବାକୁ ଲାଗିଲେ । ଏମନ୍ତ ସମୟରେ ଦେଖିଲେ ଯେ ହରିଣୀ ଦୂରରେ ଛିଡ଼ା ହୋଇ ଊର୍ଦ୍ଧ୍ୱମୁଖରେ ଅଶ୍ରୁପୂର୍ଣ୍ଣ ଲୋଚନରେ ସେହି ପଥିକ ଏବଂ ତାହାର ଶାବକ ପ୍ରତି ବାରମ୍ବାର ବ୍ୟାକୁଳ ଦୃଷ୍ଟିପାତ କରୁଅଛି । ପଶୁ ପ୍ରାଣରେ ସନ୍ତାନ ପ୍ରତି ଏପରି ବାତ୍ସଲ୍ୟ ଥିବାର ଦେଖି ସେହି ଯୁବା ପୁରୁଷଙ୍କର ହୃଦୟ ଦୟାରେ ବିଗଳିତ ହେଲା ଏବଂ ସେ ମୃଗଶିଶୁର ବନ୍ଧନ ମୋଚନ ନ କରି ରହି ପାରିଲେ ନାହିଁ । ନିଜ ଶାବକକୁ ପୁନଃପ୍ରାପ୍ତ ହୋଇ ହରିଣୀ ପଥିକ-ଆଡ଼କୁ ଆନନ୍ଦାଶ୍ରୁ-ପୂର୍ଣ୍ଣ ନୟନରେ ଅନାଇ ବନ ମଧ୍ୟକୁ ଚାଲିଗଲା । ପଥିକ ମଧ୍ୟ ନିଜ ହୃଦୟ ମଧ୍ୟରେ ପୁଣ୍ୟକର୍ମର

ପରମ ଆନନ୍ଦ ଅନୁଭବ କରିବାକୁ ଲାଗିଲେ । କିଛିକ୍ଷଣ ଉତ୍ତାରେ ସେହି ବନ ମଧ୍ୟରେ ରାତ୍ରି ଉପସ୍ଥିତ ହେବାରୁ ଅଶ୍ୱାରୋହୀ ଗୋଟିଏ ବୃକ୍ଷମୂଳରେ ଆଶ୍ରୟ ଗ୍ରହଣ କରି ସେହିଠାରେ ନିଦ୍ରା ଗଲେ । ନିଦ୍ରାବସ୍ଥାରେ ସେ ଗୋଟିଏ ଆଶ୍ଚର୍ଯ୍ୟ ସ୍ୱପ୍ନ ଦେଖିଲେ । ସ୍ୱପ୍ନରେ ଗୋଟିଏ ଜ୍ୟୋତିର୍ମ୍ମୟ ଦେବ-ମୂର୍ତ୍ତି ତାହାଙ୍କ ସମ୍ମୁଖରେ ଉଭା ହୋଇ ପ୍ରସନ୍ନ ନୟନରେ ତାଙ୍କ ଆଡ଼କୁ ଅନାଇଁ କହିଲେ "ହେ ବତ୍ସ, ତୁମ୍ଭେ ଆଜି ଯେଉଁ ସୁକୃତ କରିଅଛ, ସେଥି ନିମିତ୍ତ ପରାତ୍ପର ପରମେଶ୍ୱର ତୁମ୍ଭ ପ୍ରତି ତୁଷ୍ଟ ହୋଇଅଛନ୍ତି ଏବଂ ତାଙ୍କ କୃପାରେ ତୁମ୍ଭେ ଅଳ୍ପକାଳ ମଧ୍ୟରେ ଗଜନୀ ନଗରର ଅଧିପତି ହେବ । ସାବଧାନ, ସାବଧାନ, କଦାପି ଐଶ୍ୱର୍ଯ୍ୟ ମଦରେ ମତ୍ତ ହୋଇ ଜୀବମାନଙ୍କ ପ୍ରତି ନିର୍ଦ୍ଦୟ ବ୍ୟବହାର କରିବ ନାହିଁ ।" ଏହା କହି ଦେବ-ମୂର୍ତ୍ତି ଅନ୍ତର୍ହିତ ହୁଅନ୍ତେ, ତାହାଙ୍କର ନିଦ୍ରା ଭାଙ୍ଗିଗଲା ।

ପରଦିନ ପ୍ରାତଃକାଳରେ ସେ ପୁନର୍ବାର ବନ ମଧ୍ୟରେ ଗମନ କରିବାକୁ ଲାଗିଲେ । ଯାଉଁ ଯାଉଁ ବାଟରେ ଦେଖିଲେ, ଏକ ସ୍ଥାନରେ ଅନେକ ଗୁଡ଼ିଏ ଭୀଷଣାକୃତି ଲୋକ ବସି ରହି ଅଛନ୍ତି । ସେମାନେ ପଥିକକୁ ଅସ-ହାୟ ଦେଖି ତାହାଙ୍କୁ କହିଲେ "ତୋନିକଟରେ ଯାହା କିଛି ଅଛି ଦେଇଯା, ନ ଦେଲେ ତୋର ପ୍ରାଣ ନାଶ କରିବୁଁ ।" ପଥିକ କିଛିମାତ୍ର ଭୀତ ନ ହୋଇ ଉତ୍ତର କଲେ "କି ଭୟ ଦେଖାଉଅଛ? ମୁଁ ମୃତ୍ୟୁକୁ ମୁଦ୍ଧା ଭୟ କରେ ନାହିଁ ।" ଏହା ଶୁଣି କ୍ରୋଧାନ୍ଧ ହୋଇ, ସେହି ଦୁଷ୍ଟ ଦସ୍ୟୁମାନେ ତାହାଙ୍କୁ ଆକ୍ରମଣ କଲେ । ତହୁଁ ସେ ପଥିକ ନିଜ ତରବାରି ଦ୍ୱାରା ଆତ୍ମରକ୍ଷା କରିବାକୁ ଲାଗିଲେ । କିନ୍ତୁ ଦସ୍ୟୁମାନଙ୍କର ସଂଖ୍ୟା ଅନେକ ଥିବାରୁ, ସେ ଅବଶେଷରେ ବାହୁରେ ଆଘାତ ପ୍ରାପ୍ତ ହୋଇ ଆଉ [illegible]ଚାଳନା କରି ପାରିଲେ ନାହିଁ । ଦସ୍ୟୁମାନେ ତାହାଙ୍କୁ ବାନ୍ଧି ନିଜ ଘରକୁ [illegible]ଇଗଲେ ଏବଂ କହିଲେ "ତୁମ୍ଭର ସାହସ ଓ ବଳ ଦେଖି ଆମ୍ଭେମାନେ [illegible]ଷ୍ଟ ହୋଇଅଛୁଁ । ତୁମ୍ଭେ ଆମ୍ଭମାନଙ୍କ ସଙ୍ଗରେ ମିଶି ଦସ୍ୟୁବୃତ୍ତି ଅବ-

ଲମ୍ବନ କର ।" ପଥିକ ଏପରି ମାଚ ଓ ନିଷ୍ଠୁର କର୍ମ କରିବାକୁ ଅସମ୍ମତ ହେବାରୁ ସେମାନେ ଜଣେ ଦାସ-କ୍ରେତାଠାରୁ କିଛି ମୂଲ୍ୟ ନେଇ ତାହାଙ୍କୁ ବିକ୍ରୟ କରି ଦେଲେ । ଉକ୍ତ ଦାସକ୍ରେତା କିଛି ଦିନ ଉତ୍ତାରେ ତାହାଙ୍କୁ ଗଜନୀ-ଅଧିପତି ଅଲପ୍ତଗୀନଙ୍କଠାରେ ବିକ୍ରୟ କଲା । ଦାସ କିଛିକାଳ ଉକ୍ତ ରାଜାଙ୍କର ଆଶ୍ରୟରେ ରହି ତାହାଙ୍କୁ ନିଜ ଧର୍ମପରାୟଣତା ଓ କର୍ମଠତା ପ୍ରଭୃତି ଗୁଣ ଦ୍ୱାରା ସନ୍ତୁଷ୍ଟ କରିବାରୁ, ସେ ତାହାଙ୍କୁ ଦାସତ୍ୱରୁ ମୁକ୍ତ କରି କ୍ରମେ କ୍ରମେ ଉଚ୍ଚ ପଦମାନଙ୍କରେ ନିଯୁକ୍ତ କଲେ । ଅବ-ଶେଷରେ ସେ ରାଜାଙ୍କର ମନ୍ତ୍ରୀ ଏବଂ ସୈନ୍ୟାଧ୍ୟକ୍ଷ ପଦ ଲାଭ କଲେ । କି ଆଶ୍ଚର୍ଯ୍ୟ! ଯେଉଁ ବ୍ୟକ୍ତି ସହାୟ-ସମ୍ପତ୍ତିହୀନ ହୋଇ ବନରେ ଭ୍ରମଣ କରୁଁ କରୁଁ ଦାସରୂପେ ବିକ୍ରୀତ ହୋଇଥିଲା, ସେ ବର୍ତ୍ତମାନ ଗୋଟିଏ ବିପୁଳ ରାଜ୍ୟର ସୈନ୍ୟାଧ୍ୟକ୍ଷ ଓ ପ୍ରଧାନ ମନ୍ତ୍ରୀରୂପେ ପ୍ରତିଷ୍ଠିତ ହେଲା । କିଛିକାଳ ପରେ ବିଧାତା ତାହାଙ୍କୁ ଅଧିକ ଉଚ୍ଚପଦ ପ୍ରଦାନ କଲେ । ଅଲପ୍ତଗୀନ ରାଜାଙ୍କର ଗୋଟିଏ ପରମସୁନ୍ଦରୀ କନ୍ୟା ଥିଲା ଏବଂ ସେହି କନ୍ୟାଟି ରାଜାଙ୍କର ଏକ ମାତ୍ର ଅପତ୍ୟ ଥିଲା । ରାଜା ଅନୁସନ୍ଧାନ ଦ୍ୱାରା ଜାଣିଲେ ଯେ ତାହାଙ୍କର ନୂତନ ମନ୍ତ୍ରୀ ଏବଂ ସୈନ୍ୟାଧ୍ୟକ୍ଷ ଉଚ୍ଚବଂଶରେ ଜାତ । ଇତିପୂର୍ବେ ରାଜା ତାଙ୍କର ବଳବୀର୍ଯ୍ୟ, ରୂପ, ଓ ଗୁଣରେ ମୁଗ୍ଧ ହୋଇଥିଲେ । ବର୍ତ୍ତମାନ ତାହାଙ୍କର ଉଚ୍ଚ କୁଳରେ ପ୍ରସୂତ ହୋଇ-ଥିବାର ଜାଣି ତାହାଙ୍କୁ ନିଜ କନ୍ୟା ସମ୍ପ୍ରଦାନ କରିବାର ଇଚ୍ଛା ପ୍ରକାଶ କଲେ, ଏବଂ କିଛି ଦିନ ଉତ୍ତାରେ ମହା ସମାରୋହରେ ନିଜ କନ୍ୟାର ବିବାହ ସମ୍ପନ୍ନ କଲେ । ରାଜା ଅଲପ୍ତଗୀନଙ୍କର ମୃତ୍ୟୁ ପରେ ତାହାଙ୍କର ଜାମାତା ରାଜ୍ୟାଧିପତି ହୋଇ ସବକ୍ତଗୀନ ନାମରେ ବିଖ୍ୟାତ ହେଲେ । ଏହି ପ୍ରକାରେ ତାହାଙ୍କର ସ୍ୱପ୍ନ ସଫଳ ହେଲା । ଯେଉଁ ବିଖ୍ୟାତ ଗଜନୀ-ଭୂପତି ମହମୁଦ, ଭାରତ ଭୂମିରେ ସର୍ବ ପ୍ରଥମେ ମୁସଲମାନ ଅଧିକାର ସ୍ଥାପନ କରିଥିଲେ, ସବକ୍ତଗୀନ ତାହାଙ୍କର ପିତା ।

# ଶ୍ରୀରାମ ବନବାସ ।

(ସର୍ଗ ଉପକ୍ରମ ।)

ଏକେତ ଅଯୋଧ୍ୟା ନଗରୀ-ରାଣୀ,
ଦେବ ସଭା ମଧ୍ୟେ ଯେସନେ ଇନ୍ଦ୍ରାଣୀ,
ସିନ୍ଧୁ-ବକ୍ଷେ ଯଥା ରମା ସୁନ୍ଦରୀ,
ସରଯୂର ଅଙ୍କେ ରମ୍ୟ ନଗରୀ,
ବିରାଜିତ ଲୀଳା ରଙ୍ଗେ ;
ଲୋଚନ-କୌମୁଦୀ ତୋହର ପ୍ରତିମା
ଖେଳଇ ଶୋଭା ତରଙ୍ଗେ ।

୨

ସ୍ୱଭାବେ ନଗରୀ ଆନନ୍ଦମୟୀ,
ଯେଣୁ ତାର ସୁତେ ବଣ୍ଣବିଜୟୀ,
ଆଜ ପୁଣି ତାର ପ୍ରାଣର ରାମ,
ସର୍ବ୍ବଗୁଣାକର କରୁଣାଧାମ,
ହେବେ ବୋଲି ଯୁବରାଜ,
ଭବନେ ଭବନେ ମହା ମହୋତ୍ସବ
ଲାଗିଅଛି ଆହା ଆଜ ।

୩

ଉଡ଼ଇ ପତାକା— ଶ୍ରେଣୀ ଅମ୍ବରେ,
ମଙ୍ଗଳ ବାଜଣା ବାଜେ ସୁସ୍ୱରେ,
ଶୁଭଇ ଚୌଦିଗେ ଶୁଭ ସଙ୍ଗୀତ,
ଧୂପ ପୁଷ୍ପ ଗନ୍ଧେ ପୁରୀ ପୂରିତ,
ମହାନନ୍ଦେ ପୁରବାସୀ
ବିବିଧ ବିଧାନେ ରତ ନର ନାରୀ,
ଶ୍ରୀରାମ ଶୁଭ ମନାସି ।

୪

ବାଳ ବୃଦ୍ଧ ଯୁବା    ବୃନ୍ଦ ବାଣ୍ଡରେ,
ଜୟ ଜୟ ରାମ    ଧ୍ୱନି ତୁଣ୍ଡରେ,
ସିନ୍ଧୁ-ନାଦ ପ୍ରାୟେ    ଶୁଭେ ଚହଳ,
ଲହରୀ ପରାଏ    ଲୋକ-ଗହଳ,
ପ୍ରାସାଦ-ଶିଖରେ ଠୁଳ
ଘନ ନୀଳକେଶୀ    ବିଦ୍ୟୁତନୟନା
ଅଯୋଧ୍ୟା ରମଣୀକୁଳ ।

୫

ଉଲ୍ଲାସେ ଆକୁଳ    ଅଯୋଧ୍ୟା ପ୍ରାଣ,
ପୂର୍ଣ୍ଣିମା ଜଣାନ୍ତେ    ସିନ୍ଧୁ ସମାନ,
କିନ୍ତୁ ସହସା କି    ଘୋର ବାରତା,
ପଶିଲା ଭେଦ ସେ    ପୁର-ଜନତା,
ରାମ ଯିବେ ବନବାସ ।
ଉଠିଲା ବେଳକୁ    ଦିନକର ଶିଶୁ
ରାହୁ କିବା କଲା ଗ୍ରାସ ।

୬

କେମନ୍ତେ ବର୍ଣ୍ଣିବି    ଅଯୋଧ୍ୟା-ଦଶା,
ସହସା ବିଷାଦ—    ଭରେ ବିବଶା,
କୋଟି କୋଟି ନେତ୍ରୁ    ବହିଲ ନୀର
ହାହାକାରେ ପୂର୍ଣ୍ଣ    କୋଟି ମନ୍ଦିର,
ପ୍ରଭାମୟ ଏ ପ୍ରଭାତେ
ଅମା-ଅନ୍ଧକାରେ    ଘୋଟିଲା ସେ ପୁରୀ
ଦାରୁଣ ଶୋକ ନିର୍ଘାତେ ।

୭

ଏଣେ ଦେଖ ଆହା　　ରାଜଭବନେ
ନକ୍ତେ ଦଶରଥ　　ଭୂମି ଶୟନେ,
କ୍ରୂର ବ୍ୟାଧଶରେ　　କୁରଙ୍ଗ ପ୍ରାୟେ
ଶୋକେ ଅଚେତନ　　ସେ ନରରାୟେ ।
ସେ ବିଷାଦ କି ବର୍ଣ୍ଣିବି,
ଜୀବନ ପ୍ରଦୀପ　　ଶୋକ ବାତାଘାତେ
ଯାଉଛି କି ଆହା ଲିଭି ।

୮

ଅନ୍ତଃପୁରେ ଯହିଁ　　ରାମ ଜନନୀ
ପଶିଲା ସେ ଶୋକ　　ଯେହ୍ନେ ଅଶନି,
ପଡିଲେ ମୂର୍ଚ୍ଛିତା　　ଦେବୀ ଭୂତଳେ,
ମୋ ରାମ ରାମରେ　　ବୋଲି ବିକଳେ
ବକ୍ଷେ ରଖି ମାତୃଶିର ;
ଉଠ ମା ଉଠ ମା　　ବୋଲନ୍ତି ଶ୍ରୀରାମ
ସୁଖେ ଦୁଃଖେ ସଦା ଧୀର ।

୯

ଯେତନେ ପ୍ରବୋଧି　　ଜନନୀ ପ୍ରାଣ,
ସମସ୍ତଙ୍କ ପାଶୁଁ　　ଗୁଣ-ନିଧାନ,
ମାଗିଲେ ମେଲାଣି　　ସ୍ନେହ ବଚନେ,
କାନ୍ଦିଲେ ବିକଳେ　　ଆତ୍ମୀୟ ଜନେ,
କ୍ରମେ ସେ କ୍ରନ୍ଦନ ରବ ;
କୋଟି କୋଟି କଣ୍ଠୁଁ　　ବାହାର ସଘନେ
ଶବ୍ଦେ ଜିଣିଲା ଅର୍ଣ୍ଣବ ।

୧୦

ସାଧ୍ୱୀ ପତିବ୍ରତା— ମୁକୁଟମଣି,
ଜନକ ଦୁହିତା ରାମରମଣୀ,
ପ୍ରାଣ କାନ୍ତ ପଦେ ମସ୍ତକ ଥୋଇ,
ପାଦ ପଦ୍ମ ଅଶ୍ରୁ— ଶିଶିରେ ଧୋଇ,
କହନ୍ତି "ମୁଁ ଯିବି ବନେ ;
ସଙ୍ଗେ ସଙ୍ଗେ ଥିବି ଶ୍ରୀପଦ ସେବିବି,
ଭିକ୍ଷା ମୋର ଶ୍ରୀଚରଣେ ।"

୧୧

କହନ୍ତି ଲକ୍ଷ୍ମଣ ପ୍ରାଣର ଭାଇ,
ଭକ୍ତିଭରେ ରାମ ଚରଣ ଚାହିଁ,
"ସେ ଚରଣ ଯୁଗ ହୃଦୟେ ଧରି
ସଙ୍ଗେ ସଙ୍ଗେ ବନେ ବନେ ବିଚରି
ଆଜ୍ଞା ପାଳିବି ସତତ ;
ଯାଉ ଅବା ରହୁ ଲକ୍ଷ୍ମଣ ଜୀବନ,
ଲକ୍ଷ୍ମଣର ଏହି ବ୍ରତ ।"

୧୨

ଅବଶେଷେ ରାମ ସୀତା ଲକ୍ଷ୍ମଣ
ଭକ୍ତିଭରେ ବନ୍ଦି ଗୁରୁ-ଚରଣ,
ବାହାରିଲେ ଯହୁଁ ରାଜଦାଣ୍ଡରେ,
ସକଳେ ବୋଲନ୍ତି ଅଯୋଧ୍ୟା ନଗରେ,
"ହା ରାମ ସୀତା ଲକ୍ଷ୍ମଣ ;
ଯାଉଅଛ କାହିଁ କେମନ୍ତେ ବଞ୍ଚିବୁଁ
ନ ଦେଖି ତୁମ୍ଭ ବଦନ ।"

୧୩

କର ଯୋଡ଼ି ରାମ    କହନ୍ତି ବାଣୀ,
"ପୁରବାସୀ ସବେ    ଦିଅ ମେଲାଣି ।
ତୁମ୍ଭର ପବିତ୍ର    ସ୍ନେହ ଦୟାରେ
ରଘୁକୁଳ ଖ୍ୟାତ    ବିଶ୍ୱ ସଂସାରେ ।
ସେହି ସ୍ନେହ ସଦା ସ୍ମରି
ଚତୁର୍ଦ୍ଦଶ ବର୍ଷ—    ଅନ୍ତେ ବାହୁଡ଼ିବୁଁ
ପୁଣି ଅଯୋଧ୍ୟା ନଗରୀ ।"

୧୪

"ଲୋଡ଼ିଲା ତୁମ୍ଭଙ୍କୁ    ଏ ରଘୁକୁଳ,
ପୁଣ୍ୟ ଅଯୋଧ୍ୟାର    ଯଶ ବିପୁଳ"
ଏହା କହି ରାମ    ସାଶ୍ରୁ ଲୋଚନେ
ଇଷ୍ଟଦେବେ ସ୍ମରି    ନିର୍ମଳ ମନେ
ଦୁଃଖୀ ଭିକାରି ପରାଏ
ବଲ୍କଳ ବସନେ    ଆବରି ଶ୍ରୀଅଙ୍ଗ
ଗଲେ ବନେ ନରରାୟେ ।

## ପ୍ରବଚନ ବା ସାଧୁବାକ୍ୟ ।

ଏକଦା ଟାଇଟସ୍ ନାମରେ ରୋମ ରାଜ୍ୟର ଜଣେ ସମ୍ରାଟ ଥିଲେ । ସେ ଦିନେ ରାଜ୍ୟର କୌଣସି କଲ୍ୟାଣକର କାର୍ଯ୍ୟ କରି ପାରି ନ ଥିଲେ ବୋଲି, ରଜନୀରେ ବାରମ୍ବାର ବିଳାପ କରି କହିବାକୁ ଲାଗିଲେ, "ହାୟ୍ ହାୟ୍, ମୁଁ ଆଜି ଗୋଟିଏ ଦିନ ନଷ୍ଟ କରଅଛି ।

ଗ୍ରୀସଦେଶୀୟ ଆରିଷ୍ଟଟଲ୍ ନାମକ ଜଗଦ୍ୱିଖ୍ୟାତ ପଣ୍ଡିତଙ୍କୁ ଜଣେ ପଚାରିଲେ, "ମହାଶୟ, ଅସତ୍ୟ କହିବାର ଫଳ କଣ?" ଆରିଷ୍ଟଟଲ୍ ଉତ୍ତର କଲେ, "ଏହି ଫଳ, ଯେ ସତ୍ୟ କହିଲେ ସୁଦ୍ଧା, ଲୋକେ ଆଉ ବିଶ୍ୱାସ କରନ୍ତି ନାହିଁ ।

ଏକଦା ଏଣ୍ଟୋନାଇନସ୍ ନାମରେ ଜଣେ ଧାର୍ମିକ ଓ ଦୟାଳୁ ରାଜା ରୋମରାଜ୍ୟରେ ରାଜସିଂହାସନରେ ଅଧିରୂଢ଼ ଥିଲେ । ତାଙ୍କର ଅମାତ୍ୟ-ମାନେ ଯୁଦ୍ଧ କରିବା ପାଇଁ ତାହାଙ୍କୁ ବାରମ୍ବାର ଉତ୍ତେଜିତ କରିବାରୁ, ସେ ଉତ୍ତର କଲେ, "ସହସ୍ର ପ୍ରାଣର ବିନାଶ ଅପେକ୍ଷା ଜଣକର ପ୍ରାଣ-ରକ୍ଷା କରିବା ମୋର ଅଧିକ ବାଞ୍ଛିତ ।"

ଜଣେ ବ୍ୟକ୍ତି ସ୍ପାର୍ଟା ରାଜ୍ୟର ଅଧିପତି ଏଜେସିଲସଙ୍କୁ ପଚାରିଥିଲେ "ଆପଣଙ୍କ ବିବେଚନାରେ ବାଲ୍ୟକାଳରେ କେଉଁ କେଉଁ ବିଷୟ ଶିକ୍ଷା କରିବାର ଉଚିତ ?" ରାଜା ଉତ୍ତର କଲେ "ଯୌବନ ଓ ପ୍ରୌଢ଼ାବସ୍ଥାରେ ଯେଉଁ ସବୁ ବିଷୟ କାର୍ଯ୍ୟରେ ପରିଣତ କରିବାର ଉଚିତ, ବାଲ୍ୟକା-ଳରେ ତାହାହିଁ ଶିକ୍ଷା କରିବା କର୍ତ୍ତବ୍ୟ ।"

ସର ଆଇଜାକ ନିଉଟନ ନାମରେ ଜଣେ ଜଗଦ୍‌ବିଖ୍ୟାତ ଜ୍ଞାନୀ କହି-ଥିଲେ, " ମୁଁ ବାଳକ ପରି ସମୁଦ୍ରତଟରୁ କ୍ଷୁଦ୍ର ପ୍ରସ୍ତରଖଣ୍ଡମାନ ସଂଗ୍ରହ କରୁଅଛି । କିନ୍ତୁ ଜ୍ଞାନ-ସମୁଦ୍ର ମଧ୍ୟରେ ମୁଁ କିଛିମାତ୍ର ପ୍ରବେଶ କରି ନାହିଁ ।"

ସକ୍ରେଟିସ୍-ନାମା ଗ୍ରୀସଦେଶର ସର୍ବପ୍ରଧାନ ଓ ପରମଧାର୍ମିକ ପଣ୍ଡିତ ମଧ୍ୟ କହିଥିଲେ "ମୁଁ କେବଳ ଏହି କଥା ନିଶ୍ଚିତରୂପେ ଜାଣେ ଯେ ମୁଁ କିଛି ଜାଣେ ନାହିଁ ।"

ସକ୍ରେଟିସ୍ ସ୍ୱଦେଶର ଭ୍ରମ ଓ କୁସଂସ୍କାର ସଂଶୋଧନ କରିବା ଓ ଯୁବକମାନଙ୍କୁ ସୁଶିକ୍ଷା ଦେବା ବିଷୟରେ ପ୍ରାଣପଣ ଯତ୍ନ କରିଥିଲେ, କିନ୍ତୁ ଅନେକେ ତାହାଙ୍କ ପ୍ରତି ବିଦ୍ୱେଷ ପୋଷଣ କରି, ତାଙ୍କ ନାମରେ ମିଥ୍ୟା ଅପବାଦ ଦେଇ ରାଜଦ୍ୱାରରେ ଅଭିଯୋଗ କଲେ । ତାହାଙ୍କର କିଛି ଅପରାଧ ନ ଥିଲେହେଁ ବିଚାରପତିମାନେ ଅନ୍ୟାୟରୂପେ ତାହାଙ୍କର ପ୍ରାଣଦଣ୍ଡ ବିଧାନର ଆଜ୍ଞା ଦେଲେ । ଏହି ଦଣ୍ଡାଜ୍ଞା ପ୍ରକାଶିତ ହେଲା ପରେ, ସକ୍ରେଟିସ୍ ଏକମାସ କାରାରୁଦ୍ଧ ଥିଲେ । ସେହି ସମୟରେ ସେ

ପ୍ରଫୁଲ୍ଲ ହୃଦୟରେ ତାହାଙ୍କର ଶିଷ୍ୟ ଓ ମିତ୍ରମାନଙ୍କ ସଙ୍ଗରେ ସଦାଳାପ କରି ଏବଂ ସେମାନଙ୍କୁ ନାନା ସଦୁପଦେଶ ଦେଇ କାଳହରଣ କରୁଥିଲେ । ବିନା ଅପରାଧରେ ସକ୍ରେଟିସଙ୍କର ପ୍ରାଣଦଣ୍ଡ ହେବ ବୋଲି କେତେକ ଶିଷ୍ୟ ଶୋକାକୁଳ ହୃଦୟରେ ବିଳାପ କରିବାକୁ ଲାଗିଲେ । ତାହା ଶୁଣି ସକ୍ରେଟିସ୍ କହିଲେ, "ତୁମ୍ଭମାନଙ୍କର କି ଏହି ବାଞ୍ଛା ଯେ ମୁଁ ଅପ-ରାଧୀ ହୋଇ ପ୍ରାଣତ୍ୟାଗ କରିବି?"

ଖ୍ରୀଷ୍ଟିୟାନ ଧର୍ମର ପ୍ରବର୍ତ୍ତକ ମହାତ୍ମା ଯୀଶୁ ବିନା ଅପରାଧରେ ଦୁଷ୍ଟ ଲୋକମାନଙ୍କ ଦ୍ୱାରା ଅଭିଯୁକ୍ତ ହୋଇ ପ୍ରାଣଦଣ୍ଡରେ ଦଣ୍ଡିତ ହୋଇଥିଲେ । ମୃତ୍ୟୁ ସମୟରେ ଶତ୍ରୁମାନଙ୍କର ଅମଙ୍ଗଳ ବାଞ୍ଛା କରିବା ଦୂରେ ଥାଉ, ଯୀଶୁ ପରମେଶ୍ୱରଙ୍କୁ ପ୍ରାର୍ଥନା କଲେ, ହେ ପରମପିତା, ଏମାନଙ୍କୁ କ୍ଷମା କର, କାରଣ ସେମାନେ କଣ କରୁଅଛନ୍ତି, ତାହା ଜାଣନ୍ତି ନାହିଁ ।

ମୁସଲମାନ ଧର୍ମ ପ୍ରବର୍ତ୍ତକ ମହାତ୍ମା ମହମ୍ମଦ କହିଅଛନ୍ତି "ହେ ମାନବ, ତୁମ୍ଭର ଯେଉଁ ମଙ୍ଗଳ ଘଟନା ଘଟେ, ତାହା ପରମେଶ୍ୱରଙ୍କ ଦ୍ୱାରା ଏବଂ ଯେଉଁ ଅମଙ୍ଗଳ ଘଟନା ଘଟେ ତାହା ତୁମ୍ଭର ନିଜ ଦ୍ୱାରା ।"

ପାର୍ଶୀ ଧର୍ମର ପ୍ରବର୍ତ୍ତକ ଜୋରୋଷ୍ଟର କହିଅଛନ୍ତି, "ହେ ମାନବ, ସୂର୍ଯ୍ୟପରି ତେଜୋମୟ ହୁଅ ଏବଂ ଚନ୍ଦ୍ରପରି ନିର୍ମଳ ହୁଅ । ପବିତ୍ରତା ଶିକ୍ଷା କର । ମନ ସଚ୍ଚିନ୍ତା ଚିନ୍ତା କରୁ, ବାକ୍ୟ ଶୁଭ କହୁ, କାର୍ଯ୍ୟ ଶୁଭ କରୁ । ସମସ୍ତ ଦୁଷ୍ଟ ଚିନ୍ତା, ଦୁଷ୍ଟ ବାକ୍ୟ ଓ ଦୁଷ୍ଟ କାର୍ଯ୍ୟ ଦଗ୍ଧ ହେଉ ।"

ଜଣେ ଋଷି କହି ଅଛନ୍ତି "ସତ୍ୟ କଥା କହ । ସତ୍ୟରୁ କଦାପି ବିଚ୍ଛିନ୍ନ ହୁଅ ନାହିଁ । ଯେ ସତ୍ୟରୁ ବିଚ୍ଛିନ୍ନ ହୁଏ, ସେ ସମୂଳରେ ଶୁଷ୍କ ହୋଇ ଯାଏ ।"

ଆଉ ଜଣେ ଋଷି କହିଅଛନ୍ତି "ଯେଉଁ କର୍ମ କଲ୍ୟାଣ-କର, ତାହା କରିବ । ଅକଲ୍ୟାଣକର କର୍ମ କଦାପି କରିବ ନାହିଁ ।"

## ଓଡ଼ିଶାର ପ୍ରାଚୀନ କୀର୍ତ୍ତି ।

ପ୍ରାୟ ଦୁଇ ସହସ୍ର ଦୁଇଶତ ବର୍ଷ ହେଲା, ଏହି ଉତ୍କଳ ପ୍ରଦେଶ ଭାରତବର୍ଷ ମଧ୍ୟରେ ଗୋଟିଏ ପ୍ରଧାନ ତୀର୍ଥଭୂମି ରୂପେ ପରିଗଣିତ ହୋଇ ଆସୁଅଛି । ପ୍ରଥମେ ପ୍ରାୟ ଏକ ସହସ୍ର ବର୍ଷ କାଳ ଏହା ବୌଦ୍ଧମାନଙ୍କର ଧର୍ମକ୍ଷେତ୍ର ଥିଲା ଏବଂ ସେମାନେ ଓଡ଼ିଶାର ନାନାସ୍ଥାନରେ କୀର୍ତ୍ତିସମୂହ ସ୍ଥାପନ କରିଥିଲେ । ତହିଁ ଉତ୍ତାରୁ ଶୈବରାଜାମାନେ ଅନେକ ବୌଦ୍ଧ-କୀର୍ତ୍ତି ବିନାଶ କରି ନାନାସ୍ଥାନରେ ଶିବମନ୍ଦିରମାନ ନିର୍ମାଣ କରାଇଲେ ।



ପୁରୀ ଦେଉଳ ।

ତହିଁଉତ୍ତାରୁ ବୈଷ୍ଣବ ଧର୍ମାବଲମ୍ବୀ ରାଜାମାନେ ସ୍ଥାନେ ସ୍ଥାନେ ବିଷ୍ଣୁମନ୍ଦିର ନିର୍ମାଣ କରାଇଲେ । ଏହି କୀର୍ତ୍ତିମାନଙ୍କ ମଧ୍ୟରୁ କେତେ, କଳାପାହାଡ଼

ନାମକ ଜଣେ ନିଷ୍ଠୁର ମୁସଲମାନ ସେନାପତିର କ୍ରୂର ଆଦେଶରେ ବିନଷ୍ଟ ହୋଇ ଯାଇଅଛି; ଏବଂ ଆହୁରି କେତେ, କାଳର ଧ୍ୱଂସକାରୀ ପ୍ରଭାବରେ ଭଗ୍ନ ବା ବିଲୁପ୍ତ ହୋଇଅଛି, ତାହା କିଏ କହି ପାରିବ? ତଥାପି ଶତ ଶତ ମନ୍ଦିର, ମୂର୍ତ୍ତି, ଗୁମ୍ଫା ଓ ଜଳାଶୟମାନ ଅଦ୍ୟାପି ଉତ୍କଳବକ୍ଷରେ ବିରାଜିତ ରହି ଉତ୍କଳର ପ୍ରାଚୀନ ଗୌରବର ପରିଚୟ ପ୍ରଦାନ କରୁଅଛି।

ଏକ ସମୟରେ ପୁରୀ ବୌଦ୍ଧମାନଙ୍କର ଗୋଟିଏ ପ୍ରଧାନ ତୀର୍ଥକ୍ଷେତ୍ର ଥିଲା, କାରଣ ସେଠାରେ ବୁଦ୍ଧଦେବଙ୍କର ଦନ୍ତ ରକ୍ଷିତ ଥିଲା; କିନ୍ତୁ ହିନ୍ଦୁ ରାଜାମାନଙ୍କ ସମୟରୁ ସେଠାରୁ ସମସ୍ତ ବୌଦ୍ଧକୀର୍ତ୍ତି ଲୁପ୍ତ ହୋଇ-ଅଛି। ପୁରୀଜିଲ୍ଲାରେ ଭୁବନେଶ୍ୱର ନିକଟସ୍ଥ ଖଣ୍ଡଗିରି, ଉଦୟଗିରି ଓ ଧଉଳିଗିରି ଏହି ତିନୋଟି କ୍ଷୁଦ୍ର ପର୍ବତରେ ଏବଂ କଟକ ଜିଲ୍ଲାରେ ନରାଜ ପାହାଡ଼, ନଲତିଗିରି ଓ ଉଦୟଗିରି ପ୍ରଭୃତି କେତେକ ସ୍ଥାନରେ ବୌଦ୍ଧମାନଙ୍କର କୀର୍ତ୍ତିମାନ ଦୃଷ୍ଟିଗୋଚର ହୁଏ।

ଦ୍ୱିସହସ୍ରାଧିକ ବର୍ଷ ପୂର୍ବରେ ବୌଦ୍ଧତପସ୍ୱିମାନଙ୍କର ତପସ୍ୟା ନିମିତ୍ତ ଅନେକାନେକ ଗୁମ୍ଫା ଓ ରାଣୀହଂସପୁର ନାମକ ଗୋଟିଏ ଦ୍ୱିତଳପ୍ରାସାଦ ଖଣ୍ଡଗିରି ଓ ଉଦୟଗିରିର ଗାତ୍ରରେ ଖୋଦିତ ହୋଇଥିଲା। ସେ ଗୁଡ଼ିକ ଅଦ୍ୟାପି ବିରାଜିତ ରହିଅଛି। ଖଣ୍ଡଗିରିର ଶିଖର ଦେଶରେ ଗୋଟିଏ ଜୈନ ମନ୍ଦିର ଅଛି; କିନ୍ତୁ ଏହା କେବଳ ୩।୪ ଶତ ବର୍ଷ ପୂର୍ବରେ ନିର୍ମିତ ହୋଇଥିଲା। ସେହି ମନ୍ଦିର ନିକଟରେ ଦଣ୍ଡାୟମାନ ହୋଇ ଅନାଇଲେ ପ୍ରକୃତିର ବିଚିତ୍ର ସୌନ୍ଦର୍ଯ୍ୟ ଦୃଷ୍ଟିଗୋଚର ହୁଏ। ଉଦୟଗିରିର ଗୋଟିଏ ଗୁମ୍ଫାର ଶିରୋଭାଗରେ ଯେଉଁ ଖୋଦିତ ଲିପି ଦେଖାଯାଏ, ସେଥିରେ ଐର ନାମକ ବୌଦ୍ଧରାଜାଙ୍କର କୀର୍ତ୍ତି ବର୍ଣ୍ଣିତ ହୋଇଅଛି।

ଦୟାନଦୀର ତୀରବର୍ତ୍ତୀ ଧଉଳିଗିରିରେ ମଧ୍ୟ କେତେଗୁଡ଼ିଏ ଗୁମ୍ଫା ଅଛି। ଏହି ଗିରିସ୍ଥିତ ଅଶ୍ୱତ୍ଥାମା ନାମକ ଶୈଳଖଣ୍ଡରେ ଭୁବନବିଖ୍ୟାତ

ବୌଦ୍ଧନରପତି ଅଶୋକଙ୍କର ଅନୁଶାସନ ବା ଆଜ୍ଞାମାନ ଖୋଦିତ ରହିଅଛି ।

କଟକ ଜିଲ୍ଲାର ନଳତିଗିରି ଓ ଉଦୟଗିରିରେ ଅନେକାନେକ ବୌଦ୍ଧମୂର୍ତ୍ତି ଥିଲା କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ନଷ୍ଟ ବା ସ୍ଥାନ-ଭ୍ରଷ୍ଟ ହୋଇଅଛି ।

ଓଡ଼ିଶାର ହିନ୍ଦୁ କୀର୍ତ୍ତିମାନଙ୍କ ମଧ୍ୟରେ ଭୁବନେଶ୍ୱର ମନ୍ଦିର ପ୍ରାଚୀନ-ତମ । ଦ୍ୱାଦଶ ଶତ ବର୍ଷ ପୂର୍ବରେ କେଶରୀବଂଶୀୟ ରାଜାମାନଙ୍କ ରାଜତ୍ୱ ସମୟରେ ଏହା ନିର୍ମିତ ହୋଇଥିଲା । ଏହାର ଶିଳ୍ପନୈପୁଣ୍ୟ ଅତୀବ ପ୍ରଶଂସ-ନୀୟ । ମନ୍ଦିରଟି ଆମୂଳଚୂଳ ବିଚିତ୍ର କାରୁକାର୍ଯ୍ୟରେ ପରିପୂର୍ଣ୍ଣ । ମନ୍ଦିରର ତିନ ପାର୍ଶ୍ୱରେ ସଂଲଗ୍ନ ତିନୋଟି କ୍ଷୁଦ୍ର ମନ୍ଦିରରେ ଯେଉଁ ଗଣେଶ, କାର୍ତ୍ତିକ ଓ ପାର୍ବତୀଙ୍କର ମୂର୍ତ୍ତି ଦେଖାଯାଏ, ସେଥିରେ ଅସାଧାରଣ ଶିଳ୍ପ-ନୈପୁଣ୍ୟ ପ୍ରକଟିତ ହୋଇଅଛି । ମନ୍ଦିରର ଏକପାର୍ଶ୍ୱରେ ରାମାୟଣ ଓ ଅପର ପାର୍ଶ୍ୱରେ ମହାଭାରତର ଘଟନାବଳୀ ବିଚିତ୍ରରୂପେ ଖୋଦିତ ରହି-ଅଛି । ଏତଦ୍ବ୍ୟତୀତ ଚତୁର୍ଦ୍ଦିଗରେ ଦେବତା, ଗନ୍ଧର୍ବ, ନାଗକନ୍ୟା, ରାଜା, ଋଷି, ଗାୟକ, ବାଦକ, ନର୍ତ୍ତକ, ନର୍ତ୍ତକୀ, ନାନାବିଧ ପଶୁ ପକ୍ଷୀ ଓ ବୃକ୍ଷ-ଲତା—ପୁଷ୍ପପ୍ରଭୃତିର ଅସଂଖ୍ୟ ଚିତ୍ର ମନ୍ଦିରର କଳେବରକୁ ମଣ୍ଡିତ କରୁଅଛି ।

ପୂର୍ବକାଳୀନ ଲୋକମାନେ କପଡ଼ ବସ୍ତ୍ର, ଅଲଙ୍କାର ଓ ଅସ୍ତ୍ର ଶସ୍ତ୍ର ପ୍ରଭୃତି ବ୍ୟବହାର କରୁଥିଲେ, ତାହା ପୂର୍ବୋକ୍ତ ନାନାପ୍ରକାର ଚିତ୍ରମାନ-ଙ୍କରେ ପ୍ରଦର୍ଶିତ ହୋଇଅଛି । ଏହି ମହାମନ୍ଦିର ଗୋଟିଏ ବୃହତ୍ ପ୍ରାଚୀର ଦ୍ୱାରା ବେଷ୍ଟିତ । ସେଥିମଧ୍ୟରେ ଅନେକ ଦେବଦେବୀର ମନ୍ଦିର ବିରାଜିତ । ତନ୍ମଧ୍ୟରେ ପାର୍ବତୀ ମନ୍ଦିରର ଶିଳ୍ପକାର୍ଯ୍ୟ ବିଶେଷରୂପେ ପ୍ରଶଂସନୀୟ । ପୂର୍ବକାଳରେ ଭୁବନେଶ୍ୱର ଗୋଟିଏ ସମୃଦ୍ଧିଶାଳୀ ନଗର ଏବଂ କେଶରୀ-ବଂଶୀୟ ରାଜାମାନଙ୍କର ରାଜଧାନୀ ଥିଲା । ସେମାନେ ସହସ୍ର ୨ ମନ୍ଦିର ନିର୍ମାଣ

କର ନଗରର ଶୋଭା ବର୍ଦ୍ଧିତ କରଥିଲେ । ସେଥିମଧ୍ୟରୁ ଅଧିକାଂଶ ମନ୍ଦିର ଭଗ୍ନ ଓ ନଷ୍ଟ ହୋଇ ଯାଇଅଛି । ତଥାପି ଅଦ୍ୟାପି ରାଜା ରାଣୀ



ଭୁବନେଶ୍ୱର ଦେଉଳ ।

ଦେଉଳ, ବ୍ରହ୍ମେଶ୍ୱର ଦେଉଳ, ସିଦ୍ଧେଶ୍ୱର ଦେଉଳ ପ୍ରଭୃତି ବର୍ତ୍ତମାନ ରହି ଶିଳ୍ପନୈପୁଣ୍ୟର ପରାକାଷ୍ଠା ପ୍ରଦର୍ଶନ କରୁଅଛି । ସେ ସମସ୍ତ ପରିଦର୍ଶନ କରି ଚିନ୍ତା କଲେ ବିସ୍ମୟାନ୍ୱିତ ହେବାକୁ ହୁଏ ।

ଯାଜପୁରରେ ମଧ୍ୟ ଅନେକ ପ୍ରାଚୀନ କୀର୍ତ୍ତି ଅଛି । ଭୁବନେଶ୍ୱର ପରି ପୂର୍ବେ ଯାଜପୁର ଅସଂଖ୍ୟ ମନ୍ଦିର ଓ ଦେବମୂର୍ତ୍ତିରେ ବିଭୂଷିତ ହୋଇ ଶୋଭା ପାଉଥିଲା । ବର୍ତ୍ତମାନ ତାହାର ଶତାଂଶର ଏକାଂଶ ସୁଦ୍ଧା ଦୃଷ୍ଟିଗୋଚର ହୁଅଇ ନାହିଁ । ମୁସଲମାନମାନଙ୍କ ସମୟରେ ଅନେକ ମନ୍ଦିର ଓ ମୂର୍ତ୍ତି ବିଧ୍ୱସ୍ତ ହୋଇଥିଲା । ବର୍ତ୍ତମାନ ଯେଉଁ କୀର୍ତ୍ତିମାନ ଅଛି, ସେଥିମଧ୍ୟରେ ଗୋଟିଏ ମାତ୍ର ପ୍ରସ୍ତରରେ ଗଢ଼ା ଗରୁଡ଼ ସ୍ତମ୍ଭ ଏବଂ ସପ୍ତମାତୃକା ପ୍ରଭୃତି

ମୂର୍ତ୍ତି ସର୍ବଶ୍ରେଷ୍ଠ । ଏପରି ରମଣୀୟ ସ୍ତମ୍ଭ ଏବଂ ସୂକ୍ଷ୍ମଶିଳ୍ପବିଶିଷ୍ଟ ମୂର୍ତ୍ତି ସମଗ୍ର ଭାରତବର୍ଷରେ ବିରଳ ଅଟେ । ଯାଜପୁରର ଅନ୍ୟ ପ୍ରାଚୀନ କୀର୍ତ୍ତିମାନଙ୍କ ମଧ୍ୟରେ ବିରଜା ଓ ବରାହନାଥ ମନ୍ଦିର ଗଣନୀୟ ଅଟେ । ବୈତରଣୀ ତଟରେ ମୁସଲମାନମାନଙ୍କର ଯେଉଁ ସୁଦୃଶ୍ୟ ମସଜିଦ୍ ଦୃଷ୍ଟିଗୋଚର ହୁଏ ତାହା ହିନ୍ଦୁ ମନ୍ଦିରମାନଙ୍କର ଉପାଦାନରେ ନିର୍ମିତ ।

ଭୁବନ ବିଖ୍ୟାତ ପୁରୀର ଜଗନ୍ନାଥ ମନ୍ଦିର ପ୍ରାୟ ୮୦୦ ବର୍ଷ ପୂର୍ବେ ନିର୍ମିତ ହୋଇଥିଲା । ଏହା ଗଙ୍ଗାବଂଶୀୟ ରାଜାମାନଙ୍କର କୀର୍ତ୍ତି । ଏହା ଯେଉଁ ପ୍ରାଚୀର ଦ୍ୱାରା ପରିବେଷ୍ଟିତ, ତାହାର ଦୈର୍ଘ୍ୟର ସମଷ୍ଟି ପ୍ରାୟ ୯୦୦ ହାତ । ବେଢ଼ାମଧ୍ୟରେ ଅନେକ ଦେବ ଦେବୀଙ୍କର ମନ୍ଦିର ଅଛି । ଜଗନ୍ନାଥମନ୍ଦିର ସୁଦୃଶ୍ୟ ହେଲେହେଁ ଭୁବନେଶ୍ୱର ମନ୍ଦିର ନିକଟରେ କାରୁକାର୍ଯ୍ୟରେ ପରାସ୍ତ ହୋଇଅଛି । ପୁରୀର ନାନାସ୍ଥାନରେ ଅନେକ ମନ୍ଦିର ଓ ବୃହତ୍ ପୁଷ୍କରିଣୀମାନ ଦୃଷ୍ଟିଗୋଚର ହୁଅଇ ।

ପୁରୀଠାରୁ ୧୦ କ୍ରୋଶ ଦୂରରେ ସମୁଦ୍ରତଟର ଅଦୂରରେ କୋଣାର୍କ ନାମକ ପରମୋତ୍କୃଷ୍ଟ ଶିଳ୍ପଶୋଭିତ ମହାମନ୍ଦିର ଗଙ୍ଗାବଂଶୀୟ ନୃପତି ବୀର ଶ୍ରୀ ନରସିଂହଦେବଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା । କିନ୍ତୁ ହାୟ୍ ଉକ୍ତ ମନ୍ଦିରର ମୁଖଶାଳା ଛଡ଼ା ଅବଶିଷ୍ଟ ସମୁଦାୟ ଗୋଟିଏ ପର୍ବତାକାର ଭଗ୍ନସ୍ତୂପରେ ପରିଣତ ହୋଇଅଛି । ଏହି ସ୍ଥାନର ବିଂଶତି କ୍ରୋଶ ମଧ୍ୟରେ କୌଣସି ପର୍ବତ ବା ପ୍ରସ୍ତରଖଣି ନାହିଁ ; ତଥାପି ପ୍ରକାଣ୍ଡ ପ୍ରସ୍ତରମାନ ଅଦ୍ଭୁତ ଉପାୟରେ ବହୁଦୂରରୁ ଆନୀତ ହୋଇ ମନ୍ଦିର ନିର୍ମାଣ କାର୍ଯ୍ୟରେ ନିୟୋଜିତ ହୋଇଥିଲା । ଏଠାରେ ସୁବୃହତ୍ ହସ୍ତୀ[illegible] ଓ ସିଂହର ବିଶାଳ ମୂର୍ତ୍ତିମାନ, ଅଶ୍ୱାରୂଢ଼ ଯୋଦ୍ଧାମାନଙ୍କର ଏ[illegible] କିନ୍ନର-ମାନଙ୍କର ବିଶାଳ ଓ ବିଚିତ୍ର ମୂର୍ତ୍ତିମାନ ନୟନଗୋ[illegible] ମୁଖଶାଳାର କଳେବରରେ ଅତୁଳଶିଳ୍ପକୁସୁମ[illegible] ଏବଂ

ବିଚିତ୍ରଭୂଷା ସୁନ୍ଦରୀ ନାଗକନ୍ୟାମାନଙ୍କର ପରମସୁନ୍ଦର ମୂର୍ତ୍ତିମାନ ଖୋଦିତ ହୋଇଅଛି । ଏହି ମୁଖଶାଳାର ଖଣ୍ଡିଏ ସୁବୃହତ ପ୍ରସ୍ତରରେ ଅତି ଅଦ୍ଭୁତ ନୈପୁଣ୍ୟ ସହକାରେ ଖୋଦିତ ନବଗ୍ରହ ମୂର୍ତ୍ତି ବିରାଜିତ । ସେ ପ୍ରସ୍ତର ଖଣ୍ଡିକ ମୁଖଶାଳାରୁ ଅପସାରିତ ହୋଇ କିଛି ଦୂରରେ ଇଂରାଜ ଗବର୍ଣ୍ଣମେଣ୍ଟ କର୍ତ୍ତୃକ ଅବସ୍ଥାପିତ ହୋଇଅଛି । କେବଳ ମୁଖଶାଳାର କାରୁକାର୍ଯ୍ୟ ଏପରି ବିଚିତ୍ର ଏବଂ ରମଣୀୟ ; ଆହା ତେବେ, ପଦ୍ମତାକାର ଭଗ୍ନସ୍ତୂପରେ ପରିଣତ କୋଣାର୍କର ପ୍ରଧାନ ମନ୍ଦିର, ଭାଙ୍ଗିଯିବା ପୂର୍ବରେ କି ଅପୂର୍ବ ଶୋଭା ଧାରଣ କରିଥିଲା, ତାହା କିଏ କହି ପାରିବ ?

କୀର୍ତ୍ତିଶାଳିନୀ ଓଡ଼ିଶାରେ ଆହୁରି ଅନେକ କୀର୍ତ୍ତିର ଭଗ୍ନାବଶେଷ ରହି-ଅଛି । ସେଥିମଧ୍ୟରେ ଚଉଦୁଆର ଦୁର୍ଗ ଏବଂ ତନ୍ମଧ୍ୟସ୍ଥିତ ଶିବ ମନ୍ଦିରମାନ, କଟକର ବାରବାଟୀ ଦୁର୍ଗ, କାଠଯୋଡ଼ି ନଦୀର ପଶ୍ଚିମରେ ଥିବା ସାରଙ୍ଗ-ଗଡ଼, ଚୂଡ଼ଙ୍ଗଗଡ଼, ବାଲେଶ୍ୱର ଜିଲ୍ଲାରେ ଥିବା କୁପାରି ଦେବମନ୍ଦିର ଓ ମୂର୍ତ୍ତି ପ୍ରଭୃତି ଏବଂ ପାଳିଆ ଗ୍ରାମର ବଇଁଶି ଦେଉଳ ପ୍ରଧାନ । କାଠଯୋଡ଼ିର ବିଖ୍ୟାତ ପଥରବନ୍ଧ ମଧ୍ୟ ଗୋଟିଏ ପ୍ରାଚୀନ କୀର୍ତ୍ତି ଅଟେ ।

## ସ୍ତବ ।

(ଶଙ୍ଖସଭରଣ ବୃତ୍ତ)

୧

ଅଖି[illegible] [illegible]ନ୍ଦ୍ରିଭ୍ରପତି  ମୋ ଜୀବନ ସ୍ୱାମୀ<br>
ତୁହି [illegible] ପିତାମାତା  ପ୍ରଭୁ ଅନ୍ତର୍ଯ୍ୟାମୀ<br>
[illegible]ନ୍ୟ କରୁଣା ତୋହର,<br>
[illegible]ନି କାହିଁ  ତାର ପଟାନ୍ତର ।

୨

ବ୍ରହ୍ମାଣ୍ଡର ଆଦିମୂଳ    ନିଖିଳ ବିଧାତା,
ସକଳ କଲୁଷହାରୀ    ହେ ମଙ୍ଗଳଦାତା ।
ତୋର ମଙ୍ଗଳ ସଙ୍ଗୀତ,
ନିଖିଳ ଭୁବନ ଗାଏ    ହୋଇ ବିମୋହିତ ।

୩

ଦ୍ୟୁଲୋକେ ଭାସ୍କର ଚନ୍ଦ୍ର—    ନକ୍ଷତ୍ର ନିକର,
ଅନ୍ତରୀକ୍ଷେ ସମୀରଣ—    ସଙ୍ଗେ ଜଳଧର
ପ୍ରଭୋ ଭୂଲୋକେ ସାଗର,
ଅଚଳ ଗହନ ନଦୀ    ପଶୁ ପକ୍ଷୀ ନର,

୪

ସର୍ବେ ତୋ କରୁଣା ସୁଧା    କରୁଛନ୍ତି ପାନ,
କୋଟି ବ୍ରହ୍ମାଣ୍ଡର ନାଥ    ତୁ ପ୍ରେମ ନିଦାନ,
ପ୍ରଭୋ ତୋ ପ୍ରେମ କିରଣ,
ଉଜ୍ଜଳଇ ବିଶ୍ୱବାସି—    ହୃଦ ନିକେତନ ।

୫

ଜନକ ଜନନୀ ସୁତ—    ସୁତା ଜାୟାଧବ,
ସହୋଦର ସହୋଦରା    ଆତ୍ମୀୟ ବାନ୍ଧବ,
ପ୍ରଭୋ ଏ ସର୍ବ ସମ୍ବନ୍ଧ,
ତୋର ଦୟା-ନିଦର୍ଶନ    ଆହେ ଆଦିକନ୍ଦ ।

୬

ବିଘ୍ନହନ୍ତା ତୁହି ନାଥ    ସକଳ ଜୀବନେ,
ସମ୍ପଦେ ବିପଦେ ସର୍ବେ    ଜୀବନେ ମରଣେ,
ପୂର୍ଣ୍ଣ ମଙ୍ଗଳ-ଆଳୟ,
ଦେଉ[illegible] ସର୍ବଜନେ    ଅଭୟ ଆଶ୍ରୟ ।

୭

ବିଶ୍ୱଗୁରୁ ବିଶ୍ୱରାଜ        ବିଶ୍ୱ-ପିତା-ମାତା,
ବିଶ୍ୱଜନ-ପ୍ରାଣସଖା        ଦୁଃଖହାରୀ ଦାତା,
ଦୀନବନ୍ଧୁ କୃପାସିନ୍ଧୁ,
ସୁରନର ମାଗୁଛନ୍ତି        ତୋର କୃପାବିନ୍ଦୁ ।

୮

ସଙ୍କଟ-ପୂରିତ ଘୋର        ଭବସିନ୍ଧୁ ଜଳେ,
ଏକମାତ୍ର କର୍ଣ୍ଣଧାର        ତାରୁ ତୁ ସକଳେ,
ତୋର ମଙ୍ଗଳ ବିଧାନ,
କରୁଅଛୁ ମରଣକୁ        ଅମୃତ ସୋପାନ ।

୯

ହେ ଆନନ୍ଦମୟ କୋଟି—        [illegible]ପାଳକ,
ଅଧମ ଅକ୍ଷମ ମୁହିଁ        ଅବୋଧ ବାଳକ,
ଜ୍ଞାନଦାତା ଭଗବାନ,
ଦିଅ ମୋତେ ଶୁଭବୁଦ୍ଧି        ଦିଅ ଦିବ୍ୟଜ୍ଞାନ ।

୧୦

ସତ୍ୟ ପଥେ ଧର୍ମ୍ମପଥେ        ଘେନିଯାଅ ମୋତେ,
ଭସାଅ ପରାଣ ମୋର        ତବ ପ୍ରେମ-ସ୍ରୋତେ,
ପ୍ରଭୋ ପରମ ଶରଣ,
ଏ ଜୀବନ ଶ୍ରୀଚରଣେ        କଲି ସମର୍ପଣ ।

## ଶିବାଜୀ ।

ଭାରତବର୍ଷର ଦକ୍ଷିଣ ପଶ୍ଚିମ ଅଞ୍ଚଳରେ ଅବସ୍ଥିତ ଆରବସାଗରର ଉପକୂଳବର୍ତ୍ତୀ ପାର୍ବ୍ବତ୍ୟ ପ୍ରଦେଶ ମହାରାଷ୍ଟ୍ର ନାମରେ ବିଖ୍ୟାତ । ଏହି

ପ୍ରଦେଶର ଉତ୍ତରରେ ସାତପୁରା ପର୍ବତ ଏବଂ ଏହାର ମଧ୍ୟରେ ସହ୍ୟାଦ୍ରି ପର୍ବତ ବିରାଜିତ ଏବଂ ଏହା ବିଚିତ୍ର ପ୍ରାକୃତିକ ସୌନ୍ଦର୍ଯ୍ୟର ଲୀଳାଭୂମି ଅଟେ । ଏହି ଭୂଖଣ୍ଡରେ କ୍ଷତ୍ରିୟ ବଂଶରେ ୧୬୨୭ ଖ୍ରୀଷ୍ଟାବ୍ଦରେ ଶିବାଜୀ ଜନ୍ମଗ୍ରହଣ କରିଥିଲେ । ଏହାଙ୍କ ଦ୍ୱାରା ମହାରାଷ୍ଟ୍ର ଜାତି ଚିରସ୍ମରଣୀୟ ହୋଇଅଛି । ଏହାଙ୍କର ପିତା ଶାହାଜୀ ବିଜାପୁର ମୁସଲମାନ ରାଜାଙ୍କର ଜଣେ ପ୍ରଧାନ କର୍ମଚାରୀ ଥିଲେ । ଶିବାଜୀ କିଛିମାତ୍ର ଲେଖାପଢ଼ି ଶିଖି ନ ଥିଲେ କିନ୍ତୁ ସେ ଅସ୍ତ୍ର ଶସ୍ତ୍ର ପ୍ରୟୋଗରେ ଏବଂ ଅଶ୍ୱଚାଳନାରେ ସୁନିପୁଣ ଥିଲେ । ରାମାୟଣ ଓ ମହାଭାରତର ବୀରଚରିତମାନ ଶୁଣି ରାମଚନ୍ଦ୍ର ଓ ଅର୍ଜ୍ଜୁନଙ୍କ ପରି ମହାବୀର ହେବାପାଇଁ ବାଲ୍ୟକାଳରୁ ତାହାଙ୍କ ହୃଦୟରେ ପ୍ରବଳଆକାଂକ୍ଷା ଜନ୍ମିଥିଲା । ଯୌବନର ଆରମ୍ଭରେ ମୁସଲମାନ ସାମ୍ରାଜ୍ୟ ମଧ୍ୟରେ ହିନ୍ଦୁରାଜ୍ୟ ପ୍ରତିଷ୍ଠିତ କରିବା ପାଇଁ ସେ କୃତସଂକଳ୍ପ ହୋଇ ମାଉଲି ନାମକ ପାର୍ବତ୍ୟ ଅଧିବାସୀମାନଙ୍କୁ ନିଜ ସେନାଦଳଭୁକ୍ତ କରି ବିଜାପୁର ରାଜ୍ୟର ଦୁର୍ଗଗୁଡ଼ିକ ଆକ୍ରମଣ ଓ ଅଧିକାର କରିବାକୁ ଲାଗିଲେ । ଏହି ହେତୁରୁ ବିଜାପୁରର ରାଜା କ୍ରୁଦ୍ଧ ହୋଇ ଶିବାଜୀଙ୍କର ପିତାଙ୍କୁ ଧରି ଆଣି ବନ୍ଦୀ କଲେ । ତହୁଁ ଶିବାଜୀ କିଛିକାଳ ଯୁଦ୍ଧରୁ ନିରସ୍ତ ହୋଇ ବିଜାପୁରର ଅଧିପତିଙ୍କଠାରେ କ୍ଷମା ପ୍ରାର୍ଥନା କରି ପିତାଙ୍କୁ କାରାମୁକ୍ତ କରାଇଲେ । ପିତାଙ୍କର କାରାମୁକ୍ତି ଉତ୍ତାରେ ସେ ପୁଣି ମାଉଲି ସେନାମାନଙ୍କ ସାହାଯ୍ୟରେ ନୂତନ ଦୁର୍ଗମାନ ଅଧିକାର କରିବାକୁ ଲାଗିଲେ । ତହୁଁ ବିଜାପୁର-ଅଧିପତି ତାଙ୍କ ବିରୁଦ୍ଧରେ ଅଫଜଲଖାଁ ନାମକ ସେନାପତିଙ୍କୁ ଅନେକ ସୈନ୍ୟସହିତ ପ୍ରେରଣ କଲେ । ଶିବାଜୀଙ୍କର ସୈନ୍ୟସଂଖ୍ୟା ଅଳ୍ପ ଥିବାରୁ ସେ ଅଫଜଲ ଖାଁଙ୍କ ସଙ୍ଗେ ଯୁଦ୍ଧ କରିବାକୁ ସାହସ ନ କରି, କ୍ଷମା ପ୍ରାର୍ଥନା ପୂର୍ବକ ବିଜାପୁରର ଅଧୀନତା ସ୍ୱୀକାର କରି ଅଫଜଲ ଖାଁଙ୍କୁ ନିଜ ଦୁର୍ଗମଧ୍ୟକୁ ନିମନ୍ତ୍ରଣ କରି ଆଣି ଘୋର ବିଶ୍ୱାସଘାତକତାପୂର୍ବକ ତାହାଙ୍କୁ ଭେଟିବା ସମୟରେ ହତ୍ୟାକଲେ । ଶିବାଜୀଙ୍କ ଚରିତ୍ରର ଏହି

ଘୋର କଳଙ୍କ କଦାପି ମାର୍ଜ୍ଜନୀୟ ହୋଇ ନ ପାରେ । ତଦନନ୍ତର ଅଫ-ଜଲ ଖାଁଙ୍କର ମୃତ୍ୟୁସମ୍ବାଦ ତାହାଙ୍କର ସେନାମାନଙ୍କ ମଧ୍ୟରେ ପ୍ରଚରିତ ହେଲାକ୍ଷଣି, ସେମାନେ ପଳାୟନ କଲେ ଏବଂ ଶିବାଜୀ ନିଜର ଆଧିପତ୍ୟ କ୍ରମେ କ୍ରମେ ବିସ୍ତାର କରି ରାୟଗଡ଼ ନାମକ ସ୍ଥାନରେ ରାଜ୍ୟ ଭିଷିକ୍ତ ହୋଇ ନିଜ ନାମରେ ମୁଦ୍ରା ପ୍ରଚଳିତ କରାଇଲେ ।

ଏଥିଉତ୍ତାରେ ଶିବାଜୀ ମୋଗଲରାଜ୍ୟ ଆକ୍ରମଣ କରି ଲୁଣ୍ଠନ କରିବାକୁ ଲାଗିଲେ । ମୋଗଲ ସମ୍ରାଟ୍ ଆରଙ୍ଗଜେବ୍ ତାହାଙ୍କୁ ଦମନ କରିବା ପାଇଁ ଦାକ୍ଷିଣାତ୍ୟର ଶାସନକର୍ତ୍ତା ସାଇସ୍ତାଖାଁଙ୍କୁ ନିଯୁକ୍ତ କଲେ । ସାଇସ୍ତାଖାଁ ବହୁ ସୈନ୍ୟ ଘେନି ପୁନା ନଗରରେ ଉପସ୍ଥିତ ହେଲେ । ତଦ୍ଦୁର ଶିବାଜୀ ନିଶୀଥ ସମୟରେ ଏକଦଳ ବରଯାତ୍ରୀଙ୍କ ସଙ୍ଗରେ ମିଶି ୨୫ ଜଣ ମାତ୍ର ଅନୁଚରଙ୍କ ସଙ୍ଗରେ ପୁନାରେ ପ୍ରବେଶ କଲେ ଏବଂ ଅକସ୍ମାତ୍ ସାଇସ୍ତା-ଖାଁଙ୍କର ଆବାସକୁ ଆକ୍ରମଣ କଲେ । ସେ ସମୟରେ ସାଇସ୍ତାଖାଁ ନିଦ୍ରିତ ଥିଲେ ; ଏହି ଆକସ୍ମିକ ଆକ୍ରମଣରେ ନିତାନ୍ତ ବିସ୍ତ ହୋଇ ଅତି କଷ୍ଟରେ ପଳାଇ ପ୍ରାଣରକ୍ଷା କଲେ । ତତ୍ପରେ ଶିବାଜୀ ମହାବିକ୍ରମରେ ମୋଗଲ ସୈନ୍ୟମାନଙ୍କୁ ପରାସ୍ତ କରି ଦାକ୍ଷିଣାତ୍ୟରେ ଆପଣାର ଅଧିକାର ବିସ୍ତାର କରିବାକୁ ଲାଗିଲେ । କିଛୁକାଳପରେ ଶିବାଜୀ ସୁରାଟ୍ ନଗର ଲୁଣ୍ଠନ କରିଥିବାର ସମ୍ବାଦ ପାଇ, ସମ୍ରାଟ୍ ଆରଙ୍ଗଜେବ୍ କ୍ରୁଦ୍ଧ ହୋଇ ତାହାଙ୍କର ଦମନାର୍ଥ ରାଜା ଜୟସିଂହ ନାମକ ସେନାପତିଙ୍କୁ ପ୍ରେରଣ କଲେ । କିନ୍ତୁ ଶିବାଜୀ ହିନ୍ଦୁ ସେନାପତିଙ୍କ ସହିତ ଯୁଦ୍ଧ ନ କରି ତାଙ୍କ ସଙ୍ଗେ ସନ୍ଧି କଲେ ଏବଂ କିୟତ୍କାଳପରେ ବାଦସାହଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ନିଜ ପୁତ୍ରକୁ ସଙ୍ଗରେ ଘେନି ଦିଲ୍ଲୀରେ ଉପନୀତ ହେଲେ । ଆରଙ୍ଗଜେବ୍ ତାହାଙ୍କର ଯଥୋଚିତ ସମ୍ମାନ ନ କରିବାରୁ ସେ ମର୍ମ୍ମାହତ ହୋଇ ସଭାଗୃହ ପରିତ୍ୟାଗ କରି ଚାଲି ଆସିଲେ ; କିନ୍ତୁ ସେ ତତ୍କ୍ଷଣାତ୍ ଦିଲ୍ଲୀରୁ ପ୍ରସ୍ଥାନ କରି ପାରିଲେ ନାହିଁ, କାରଣ ସମ୍ରାଟ୍ ତାହାଙ୍କର ବାସଗୃହ ପ୍ରହରୀଦ୍ୱାରା ବେଷ୍ଟିତ କରି

ରଖିଥିଲେ । ତହୁଁ ଶିବାଜୀ ପୀଡ଼ିତ ଥିବାର ବ୍ୟାଜରେ କଛିଦିନ ଶଯ୍ୟାଶାୟୀ ରହି, ପରେ ଆରୋଗ୍ୟଲାଭ କରିଥିବାର ବାର୍ତ୍ତା ଘୋଷଣା କରି, ଦିନେ ସାୟଂକାଳରେ ଭାର ଭାର ମିଷ୍ଟାନ୍ନ ବଜାରରୁ ଅଣାଇ ବ୍ରାହ୍ମଣ ଓ ସନ୍ନ୍ୟାସି-ମାନଙ୍କୁ ବିତରଣ କରିବାକୁ ଲାଗିଲେ ଏବଂ ସେହି ଲୋକ ଗହଳର ସୁଯୋଗ ପାଇ, ସେ ଏବଂ ତାହାଙ୍କର ପୁତ୍ର ବଡ଼ ବଡ଼ ମିଠାଇ ଟୋକାଇ ଭିତରେ ଲୁକ୍କାୟିତ ଭାବରେ ପଶି, ତଦ୍ଦ୍ୱାରା ବାସଗୃହରୁ ବାହାରି ନଗରର ଉପକଣ୍ଠରେ ସନ୍ନ୍ୟାସିବେଶ ଧାରଣ କଲେ ଏବଂ ନାନାସ୍ଥାନ ଭ୍ରମଣ କରି ରାଜଧାନୀକୁ ଲେଉଟି ଆସିଲେ ।

ତଦନନ୍ତର ସେ ରାଜ୍ୟର ଉନ୍ନତି ଓ ସୈନ୍ୟମାନଙ୍କର ଶୃଙ୍ଖଳାସାଧନ ବିଷୟରେ ମନୋଯୋଗ ପ୍ରଦାନ କରି ଅସାଧାରଣ ବୁଦ୍ଧି ଓ କୌଶଳ-ସହକାରେ ଅନେକ ସୁବ୍ୟବସ୍ଥା ବିଧାନ କଲେ । ଏଥି ଉତ୍ତାରେ ସେ ଆହୁରି କେତେଗୁଡ଼ିଏ ଯୁଦ୍ଧରେ ମୋଗଲସେନାଙ୍କୁ ପରାସ୍ତ କରିଥିଲେ ।

ଏହିରୂପେ ଅଦ୍ଭୁତ ବୀରତ୍ୱ ଓ ଅସାଧାରଣ କୌଶଳଦ୍ୱାରା ନର୍ମଦା ନଦୀଠାରୁ କୃଷ୍ଣା ନଦୀ ପର୍ଯ୍ୟନ୍ତ ସମସ୍ତ ପ୍ରଦେଶକୁ ଅଧୀନସ୍ଥ କରି ଏବଂ ଏହି ବିସ୍ତୃତ ରାଜ୍ୟକୁ ସୁଶାସିତ କରି ମହାବୀର ଶିବାଜୀ ପ୍ରାୟ ୫୩ ବର୍ଷ ବୟସରେ ୧୬୮୦ ଖ୍ରୀଷ୍ଟାବ୍ଦରେ ଇହଲୋକରୁ ଅନ୍ତର୍ହିତ ହେଲେ । ବିଚ୍ଛିନ୍ନ ମହାରାଷ୍ଟ୍ର ଜାତିକୁ ଏକତା ଶିକ୍ଷା ଦେଇ ଏବଂ ସେମାନଙ୍କ ପ୍ରାଣରେ ନୂତନ ଉତ୍ସାହଶକ୍ତି ସଞ୍ଚାରିତ କରି, ସେ ପରାକ୍ରାନ୍ତ ମୋଗଲ ସାମ୍ରାଜ୍ୟ ମଧ୍ୟରେ ସ୍ୱାଧୀନ ହିନ୍ଦୁ ରାଜ୍ୟ ସ୍ଥାପନ କରିଥିଲେ । ଶିବାଜୀ ଯୌବନରେ ନିତାନ୍ତ ଅସହାୟ ଥାଇ ସୁଦ୍ଧା ନିଜ ସଙ୍କଳ୍ପ ସାଧନରେ ପ୍ରବୃତ୍ତ ହୋଇଥିଲେ ଏବଂ ସେହି ସଂକଳ୍ପ ଅଦ୍ଭୁତରୂପେ କାର୍ଯ୍ୟରେ ପରିଣତ କରି ସମସ୍ତ ଭାରତକୁ ଚମତ୍କୃତ କରି-ଥିଲେ । ଆରଙ୍ଗଜେବ୍ ତାହାଙ୍କର ଶତ୍ରୁ ଥିଲେହେଁ ଏବଂ ତାହାଙ୍କୁ "ପାହା-ଡ଼ିଆ ମୂଷା" ବୋଲି ଘୃଣା କରୁଥିଲେହେଁ, ତାହାଙ୍କର ମୃତ୍ୟୁ ସମ୍ବାଦ ଶୁଣି କହିଥିଲେ "ଶିବାଜୀ ଜଣେ ମହାବୀର ଥିଲେ । ମୋର ସୈନ୍ୟମାନେ ୧୯

ବର୍ଷ କାଳ ତାଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେହେଁ, ତାହାଙ୍କୁ ଦମନ କିମ୍ବା ତାହାଙ୍କ ରାଜ୍ୟକୁ ଜୟ କରି ପାରିଲେ ନାହିଁ ।" ଶିବାଜୀ ହିନ୍ଦୁଧର୍ମର ରକ୍ଷାକର୍ତ୍ତା ଏବଂ ଅଧୀନସ୍ଥ ଲୋକମାନଙ୍କର ମହୋପକାରୀ ଥିବାରୁ ତାଙ୍କ ସ୍ୱଦେଶୀୟମାନେ ତାହାଙ୍କୁ ଦେବତାର ଅବତାର ବୋଲି ମନେ କରନ୍ତି ।

## ବାଷ୍ପ ଓ ବିଦ୍ୟୁତର ଅଦ୍ଭୁତ ବଳ ।

ବାଷ୍ପ ଯେ ଅଦ୍ଭୁତବଳଶାଳୀ ଏବଂ ତାହାଦ୍ୱାରା ଅଦ୍ଭୁତ କାର୍ଯ୍ୟମାନ ସାଧିତ ହୋଇପାରେ, ଏହା ପ୍ରାୟ ୭୦।୮୦ ବର୍ଷ ପୂର୍ବେ କେହି ଜାଣି ନ ଥିଲା । ବିଗତ ୭୦ ବର୍ଷ ମଧ୍ୟରେ ଏହାର ବିସ୍ମୟଜନକ ମହାଶକ୍ତି ଆବିଷ୍କୃତ ହୋଇ ପୃଥିବୀରେ କେତେ ଅଦ୍ଭୁତ ପରିବର୍ତ୍ତନ ଘଟାଇଅଛି । ପୂର୍ବେ ପର୍ଯ୍ୟଟନ ଓ ବାଣିଜ୍ୟ ନିମିତ୍ତ ଯେଉଁ ଜଳଯାନ ଓ ସ୍ଥଳଯାନମାନ ବ୍ୟବହୃତ ହେଉଥିଲା, ସେଥିରେ ଦିନ ମଧ୍ୟରେ ୧୦।୧୨ କ୍ରୋଶରୁ ଅଧିକ ପଥ ଅତିକ୍ରମ କରିବା ଅସମ୍ଭବ ଥିଲା । ବର୍ତ୍ତମାନ ରେଲଶକଟ ଓ ବାଷ୍ପୀୟ-ପୋତ, ବାଷ୍ପଦ୍ୱାରା ଚାଳିତ ହୋଇ ଏକମାସର ପଥକୁ ଏକଦିନରେ ଅତିକ୍ରମ କରୁଅଛି । ବାଷ୍ପ ଯେ କେବଳ ବାଷ୍ପୀୟଶକଟ ଓ ପୋତର ଚାଳନାରେ ନିୟୋଜିତ ରହିଅଛି ତାହା ନୁହେ । ସୂତ୍ରକର୍ତ୍ତନ, ବସ୍ତ୍ରବୟନ, ଶିଳ୍ପଦ୍ରବ୍ୟ ନିର୍ମାଣ, ମୁଦ୍ରାଙ୍କନ ପ୍ରଭୃତି ଶତ ଶତ କାର୍ଯ୍ୟ ବାଷ୍ପର ସହାୟତାରେ ଅତ୍ୟଳ୍ପକାଳ ମଧ୍ୟରେ ସାଧିତ ହେଉଅଛି । ଇଂରାଜ ଜାତି ଯେ ଏହି ଏକ ଶତାବ୍ଦୀ ମଧ୍ୟରେ ପୃଥିବୀର ଚତୁର୍ଦ୍ଦିଗରେ ରାଜ୍ୟ ଓ ବାଣିଜ୍ୟ ବିସ୍ତାର ଦ୍ୱାରା ସର୍ବଶ୍ରେଷ୍ଠ ହୋଇଅଛନ୍ତି, ତାହା ବହୁପରିମାଣରେ ବାଷ୍ପର ସହାୟତା ଦ୍ୱାରା ଘଟିଅଛି ।

ବାଷ୍ପବଳ ଅପେକ୍ଷା ବିଦ୍ୟୁତର ଶକ୍ତି ଆହୁରି ଅଧିକ ଆଶ୍ଚର୍ଯ୍ୟ-ଜନକ । ଏହି ମହାଶକ୍ତି ପ୍ରୟୋଗ କରିବାକୁ ଶିକ୍ଷା କରି ଇଂରାଜ ଜାତି ମହାଦ୍ଭୁତ କର୍ମମାନ ସାଧନ କରୁଅଛନ୍ତି । ଏହାର ସହାୟତାରେ ସମ୍ବାଦମାନ ମୁହୂର୍ତ୍ତ

ମଧ୍ୟରେ ପୃଥିବୀର ଏକପ୍ରାନ୍ତରୁ ଅପର ପ୍ରାନ୍ତକୁ ପ୍ରେରିତ ହେଉଅଛି । ଏହାକୁ ଟେଲିଗ୍ରାଫ୍ ବା ତାରଖବର କହନ୍ତି । ବିଦ୍ୟୁତ୍ ନଗରର ରାଜପଥ-ମାନଙ୍କୁ ନିଶାକାଳରେ ଅପୂର୍ବ ଆଲୋକମାଳା ଦ୍ୱାରା ଆଲୋକିତ କରି ରଜନୀର ଅନ୍ଧକାରକୁ ବିଦୂରିତ କରୁଅଛି ଏବଂ ଆମେରିକା ପ୍ରଭୃତି ଦେଶରେ ରେଲ୍‌ଶକଟ ଓ ବାଷ୍ପୀୟ ପୋତର ଚାଳନାରେ ପ୍ରଯୁକ୍ତ ହୋଇ, ତାହାର ବିସ୍ମୟଜନକ ବେଗରେ ବାଷ୍ପକୁ ପରାସ୍ତ କରୁଅଛି ।

ପଞ୍ଚାଶତ୍ ବର୍ଷ ପୂର୍ବରେ ଭାରତବର୍ଷରୁ ଇଂଲଣ୍ଡ ଯିବା ପାଇଁ ୪ । ୫ ମାସ ସମୟ ଲାଗୁଥିଲା । ବର୍ତ୍ତମାନ ପ୍ରାୟ ଦୁଇ ସପ୍ତାହ ମଧ୍ୟରେ ସେହି ଯାତ୍ରା ସମାପ୍ତ ହେଉଅଛି । ପୂର୍ବେ ଇଂଲଣ୍ଡରୁ ଭାରତବର୍ଷକୁ ବା ଭାରତ-ବର୍ଷରୁ ଇଂଲଣ୍ଡକୁ ସମ୍ବାଦ ପ୍ରେରଣ କରି ତାହାର ଉତ୍ତର ପାଇବା ପାଇଁ ପ୍ରାୟ ୮ ମାସ ଅପେକ୍ଷା କରିବାକୁ ହେଉଥିଲା । ବର୍ତ୍ତମାନ ଏକଦିନ ମଧ୍ୟରେ ସମ୍ବାଦ ପଠାଇ, ତାହାର ଉତ୍ତର ପାଇବାକୁ ହେଉଅଛି । ଏଥିରୁ ସ୍ପଷ୍ଟ ଜଣାଯାଉଅଛି ଯେ ବାଷ୍ପ ଓ ବିଦ୍ୟୁତର ଶକ୍ତି ସ୍ଥାନମାନଙ୍କର ଦୂରତ୍ୱକୁ ବିନାଶ କରୁଅଛି । ବାଷ୍ପ—ବଳ ଓ ବିଦ୍ୟୁତର ବଳଦ୍ୱାରା ଗମ-ନାଗମନ ଓ ସମ୍ବାଦ—ବହନମୟ ଏପରି ସୁଗମ ହେବାରୁ ଭିନ୍ନଦେଶୀୟ ଲୋକମାନେ ପରସ୍ପରଙ୍କୁ ସମ୍ୟକରୂପେ ଚିହ୍ନି ଓ ଜାଣି ପାରୁଅଛନ୍ତି, ଏବଂ ଏକ ଦେଶର ବାଣିଜ୍ୟଦ୍ରବ୍ୟସମୂହ ଅଳ୍ପ ବ୍ୟୟରେ ଏବଂ ଅଳ୍ପ କାଳରେ ଅନ୍ୟଦେଶକୁ ନୀତ ହୋଇ ତାହାର ଅଭାବ ମୋଚନ କରୁଅଛି । ଭାରତ-ବର୍ଷରେ ଦୁର୍ଭିକ୍ଷ ସମୟରେ ରେଲ୍‌ଶକଟଦ୍ୱାରା ଶସ୍ୟସମ୍ଭାର ନାନାସ୍ଥାନରୁ ଆନୀତ ହୋଇ ଦୁର୍ଭିକ୍ଷର ଘୋର କଷ୍ଟ ବହୁପରିମାଣରେ ହରଣ କରୁଅଛି । ୧୮୬୬ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ଯେଉଁ ଭୟଙ୍କର ଦୁର୍ଭିକ୍ଷ ହୋଇଥିଲା ସେଥିରେ ଏହି କ୍ଷୁଦ୍ର ପ୍ରଦେଶରେ ଲକ୍ଷ ଲକ୍ଷ ନର ନାରୀ ଅନାହାରରେ ମରିଯାଇଥିଲେ । ସେ ସମୟରେ ଓଡ଼ିଶାରେ ରେଲପଥ ଥିଲେ, ଏପରି ଭୟଙ୍କର ପ୍ରାଣନାଶ କଦାପି ଘଟି ନ ଥାନ୍ତା ।

ସମ୍ପ୍ରତି ଓଡ଼ିଶାରେ ରେଲମାର୍ଗ ପ୍ରସ୍ତୁତ ହୋଇଅଛି ଏବଂ ସେଥିରେ ବାଷ୍ପୀୟ ଶକଟ ଚାଳିତ ହେଉଅଛି । ଏହି ରେଲମାର୍ଗ ନିର୍ମାଣ ବାସ୍ତବରେ ବିସ୍ମୟଜନକ ଅଟେ । ମହାନଦୀ, ବ୍ରାହ୍ମଣୀ ପ୍ରଭୃତି ସୁପ୍ରଶସ୍ତ ନଦୀମାନଙ୍କ ଉପରେ ଯେଉଁ ସୁବୃହତ ସେତୁମାନ ନିର୍ମିତ ହୋଇ ଅଛି, ସେ ଗୁଡ଼ିକ ଇଂରାଜ ଜାତିର ଜ୍ଞାନ ଓ ଉଦ୍ୟମର ଜୟସ୍ତମ୍ଭ ସ୍ୱରୂପ । ଭାରତବର୍ଷର ବିଭିନ୍ନ ପ୍ରଦେଶମାନ ରେଲମାର୍ଗ ଦ୍ୱାରା ସଂଯୁକ୍ତ ହୋଇ ପରସ୍ପରର ସନ୍ନି-କଟ ହେଉଅଛନ୍ତି ଏବଂ ବାଣିଜ୍ୟର ବିସ୍ତାର ଦିନକୁଦିନ ବର୍ଦ୍ଧିତ ହେଉ-ଅଛି । ରେଲପଥ ଦ୍ୱାରା ଦେଶୀୟ ଲୋକଙ୍କର ଆଳସ୍ୟ ଓ କୁସଂସ୍କାର ଅନେକ ପରିମାଣରେ ବିଦୂରିତ ହେଉଅଛି । ଆମ୍ଭମାନଙ୍କର ପରମ ଦୟାଳୁ ଗବର୍ଣ୍ଣମେଣ୍ଟ ଆମ୍ଭମାନଙ୍କୁ ରେଲ ଏବଂ ଟେଲିଗ୍ରାଫ ପ୍ରଭୃତିର ସୁବିଧା ପ୍ରଦାନ କରି ଆମ୍ଭମାନଙ୍କର ଅଶେଷ କଲ୍ୟାଣ ସାଧନ କରୁଅଛନ୍ତି ।

# ବ୍ୟାକରଣ ବିଷୟକ ପାଠ ।

## ବର୍ଣ୍ଣଶବ୍ଦ ଇତ୍ୟାଦି ।

ଅ, ଆ, ଇ, ଈ, ଉ, ଊ, ଋ, ୠ, ଏ, ଐ, ଓ, ଔ, ଏହି ବର୍ଣ୍ଣମାନଙ୍କୁ ସ୍ୱରବର୍ଣ୍ଣ ବୋଲାଯାଏ । ସ୍ୱରବର୍ଣ୍ଣ ଅନ୍ୟ ବର୍ଣ୍ଣର ସାହାଯ୍ୟ ନ ନେଇ ଉଚ୍ଚାରିତ ହୁଏ । ସ୍ୱରବର୍ଣ୍ଣ ଦୁଇ ପ୍ରକାର, ହ୍ରସ୍ୱ ଓ ଦୀର୍ଘ । ଅ, ଇ, ଉ, ଋ ଏହି ୪ ଗୋଟି ହ୍ରସ୍ୱସ୍ୱର । ଆ, ଈ, ଊ, ୠ, ଏ, ଐ, ଓ, ଔ ଏହି ୮ ଗୋଟି ଦୀର୍ଘସ୍ୱର । ହ୍ରସ୍ୱସ୍ୱରର ଉଚ୍ଚାରଣ ଅପେକ୍ଷା ଦୀର୍ଘସ୍ୱରର ଉଚ୍ଚାରଣରେ ଅଧିକ ସମୟ ଲାଗେ ।

କ, ଖ, ଗ, ଘ, ଙ । ଚ, ଛ, ଜ, ଝ, ଞ । ଟ, ଠ, ଡ, ଢ, ଣ । ତ, ଥ, ଦ, ଧ, ନ । ପ, ଫ, ବ, ଭ, ମ । ଯ, ର, ଲ, ବ । ଶ, ଷ, ସ, ହ । ଏହି ବର୍ଣ୍ଣମାନଙ୍କୁ ବ୍ୟଞ୍ଜନବର୍ଣ୍ଣ ବୋଲାଯାଏ । ପୂର୍ବେ ବା ପରେ ସ୍ୱରବର୍ଣ୍ଣ ନ ଥିଲେ ବ୍ୟଞ୍ଜନବର୍ଣ୍ଣ ଉଚ୍ଚାରିତ ହୁଏ ନାହିଁ । କ ଠାରୁ ମ ପର୍ଯ୍ୟନ୍ତ ୨୫ଟି ବର୍ଣ୍ଣକୁ ସ୍ପର୍ଶବର୍ଣ୍ଣ ବୋଲାଯାଏ ଏବଂ ତାହା ପାଞ୍ଚବର୍ଗରେ ବିଭକ୍ତ । ଯଥା, କ, ଖ, ଗ, ଘ, ଙ କବର୍ଗ ; ଏହିପରି ଚ ବର୍ଗ, ଟ ବର୍ଗ, ତ ବର୍ଗ, ପ ବର୍ଗ । ଯ, ର, ଲ, ବ, ଏହି ଚାରିଟିର ନାମ ଅନ୍ତଃସ୍ଥବର୍ଣ୍ଣ । ଶ, ଷ, ସ, ହ ଏହି ଚାରିଟିର ନାମ ଉଷ୍ମବର୍ଣ୍ଣ ।

ରାମ, ଘର, ଗାଈ, ଯାଉଛି, ଆସୁଛି, ଭଲ, ମନ୍ଦ, ଆମ୍ଭେ, ତୁମ୍ଭେ, କାଲି, ହାୟ, ଅହା, ଇତ୍ୟାଦି କଥାମାନଙ୍କର ଅର୍ଥ ଅଛି । ଯେଉଁ କଥାର ଅର୍ଥ ଅଛି ତାହାକୁ ଶବ୍ଦ ବୋଲାଯାଏ । ଅତଏବ ରାମ, ଘର, ଗାଈ ପ୍ରଭୃତି ପ୍ରତ୍ୟେକେ ଗୋଟିଏ ଗୋଟିଏ ଶବ୍ଦ ।

'ରାମ ଦୌଡ଼ୁଅଛି' ଏଠାରେ ଦୁଇଟି ଶବ୍ଦ ଏକତ୍ର ଥାଇ ମନର ଭାବକୁ ସମ୍ପୂର୍ଣ୍ଣରୂପେ ପ୍ରକାଶ କରୁଅଛି । 'ହରି ଘରକୁ ଗଲା' ଏଠାରେ ତିନୋଟି ଶବ୍ଦ ଏକତ୍ର ଥାଇ ମନର ଭାବକୁ ସମ୍ପୂର୍ଣ୍ଣରୂପେ ପ୍ରକାଶ କରୁଅଛି । 'ବିଲୁଇ ମୂଷା ମାରି ଖାଇଲା' ଏଠାରେ ଚାରିଗୋଟି ଶବ୍ଦ ଏକତ୍ର ଥାଇ ମନର ଭାବକୁ

ସମ୍ପୂର୍ଣ୍ଣରୂପେ ପ୍ରକାଶ କରୁଅଛୁ । 'ରାମ ଦୌଡ଼ୁଅଛି', ଏ ସମୁଦାୟ ଗୋଟିଏ ବାକ୍ୟ । 'ହରି ଘରକୁ ଗଲା,' ଏ ସମୁଦାୟ ଗୋଟିଏ ବାକ୍ୟ । 'ବିଲୁଇ ମୂଷା ମାରି ଖାଇଲା', ଏ ସମୁଦାୟ ଗୋଟିଏ ବାକ୍ୟ । ଅତଏବ ଅନେକ ଗୁଡ଼ିଏ ଶବ୍ଦ ଏକତ୍ରିତ ହୋଇ ମନର ଭାବକୁ ସମ୍ପୂର୍ଣ୍ଣରୂପେ ପ୍ରକାଶ କଲେ, ତାହାକୁ ବାକ୍ୟ ବୋଲାଯାଏ ।

ବାକ୍ୟ ମଧ୍ୟରେ ଥିବା ପ୍ରତ୍ୟେକ ଶବ୍ଦକୁ ପଦ ବୋଲାଯାଏ । 'ବାଘ ହରିଣକୁ ଖାଇଲା' ଏହି ବାକ୍ୟ ମଧ୍ୟରେ 'ବାଘ' ଗୋଟିଏ ପଦ । 'ହରିଣକୁ' ଗୋଟିଏ ପଦ ଏବଂ 'ଖାଇଲା' ଗୋଟିଏ ପଦ ।

ପ୍ରଶ୍ନ ।

ସାହିତ୍ୟ-ମଞ୍ଜରୀର "ରାମାୟଣ କଥା" ଏବଂ 'ବସନ୍ତ' ଏହି ଦୁଇ ପାଠ ମଧ୍ୟରେ କେତେ ପଦ, କେତେ ବାକ୍ୟ ବାହାର କର ।

ବିଶେଷ୍ୟ ।

ରାମ ଏହି ଶବ୍ଦଟି, ଗୋଟିଏ ବ୍ୟକ୍ତିର ନାମ ; କଟକ ଏହି ଶବ୍ଦଟି ଗୋଟିଏ ସ୍ଥାନର ନାମ ; ଲୁଗା ଏହି ଶବ୍ଦଟି ଗୋଟିଏ ଦ୍ରବ୍ୟର ନାମ ; ଦୟା ଏହି ଶବ୍ଦଟି ଗୋଟିଏ ଗୁଣର ନାମ ; ପଶୁ ଏହି ଶବ୍ଦଟି ଏକଜାତି ଜୀବର ନାମ ; ଗମନ ଏହି ଶବ୍ଦଟି ଏକପ୍ରକାର କାର୍ଯ୍ୟ ବା କ୍ରିୟାର ନାମ ଇତ୍ୟାଦି ।

ଯେଉଁ ଶବ୍ଦ ବ୍ୟକ୍ତିର ନାମ, ସ୍ଥାନର ନାମ, ଦ୍ରବ୍ୟର ନାମ, ଗୁଣର ନାମ, ଜାତିର ନାମ, କିମ୍ବା କୌଣସି ପ୍ରକାର କ୍ରିୟାର ନାମକୁ ବୁଝାଏ ତାହାକୁ ବିଶେଷ୍ୟ ପଦ କହନ୍ତି । ଅତଏବ ରାମ, କଟକ, ଲୁଗା, ଦୟା, ପଶୁ ଓ ଗମନ ଏହି ଶବ୍ଦମାନେ ପ୍ରତ୍ୟେକେ ବିଶେଷ୍ୟ ।

ଲିଙ୍ଗ ।

ବିଶେଷ୍ୟ-ପଦର ଲିଙ୍ଗ, ବଚନ, ପୁରୁଷ ଓ କାରକ ଅଛି । ଲିଙ୍ଗ ତିନି-ପ୍ରକାର । ଯଥା ; ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ, କ୍ଳୀବଲିଙ୍ଗ । ଯେଉଁ ଶବ୍ଦ ପୁରୁଷ-

ଜାତିକୁ ବୁଝାଏ ତାହା ପୁଂଲିଙ୍ଗ । ଯଥା ; ନର, ହଂସ । ଯେଉଁ ଶବ୍ଦ ସ୍ତ୍ରୀ-ଜାତିକୁ ବୁଝାଏ ତାହାକୁ ସ୍ତ୍ରୀଲିଙ୍ଗ କହନ୍ତି । ଯଥା ; ନାରୀ, ହଂସୀ । ଯେଉଁ ଶବ୍ଦ ପୁରୁଷ ଜାତି କିମ୍ବା ସ୍ତ୍ରୀ ଜାତିକୁ ବୁଝାଏ ନାହିଁ, ତାହା କ୍ଲୀବ-ଲିଙ୍ଗ । ଯଥା ; ଘର, ଦ୍ୱାର, ଫୁଲ, ଫଳ । ଅଧିକାଂଶ ପୁଂଲିଙ୍ଗ ଶବ୍ଦ ଶେଷରେ ଆକାର କିମ୍ବା ଈକାର ଦେଲେ ସ୍ତ୍ରୀଲିଙ୍ଗ ହୁଏ । ଯଥା ; ବ୍ରାହ୍ମଣ, ବ୍ରାହ୍ମଣୀ ; ଦୟାମୟ, ଦୟାମୟୀ ; ନଦ, ନଦୀ ; ମୃଗ, ମୃଗୀ ; ଶ୍ରୀମତ୍, ଶ୍ରୀମତୀ ; କ୍ଷତ୍ରିୟ, କ୍ଷତ୍ରିୟା ; ସୁନେତ୍ର, ସୁନେତ୍ରା ; କୋମଳ, କୋମଳା । ପୁଂଲିଙ୍ଗ ଶବ୍ଦ ଶେଷରେ ଅକ ଥିଲେ ସ୍ତ୍ରୀଲିଙ୍ଗରେ ଅକ ସ୍ଥାନରେ ଇକା ହୁଏ । ଯଥା ; ବାଳକ, ବାଳିକା ; ପାଳକ, ପାଳିକା ; କିନ୍ତୁ ରଜକ, ରଜକୀ ; ଏହି ନିୟମର ଅନ୍ତର୍ଗତ ନୁହେ, କେତେକ ସ୍ତ୍ରୀଲିଙ୍ଗ ଶବ୍ଦ ଶେଷରେ ଆଣୀ ଓ ଉଣୀ ପ୍ରତ୍ୟୟ ଥାଏ । ଯଥା ; ଇନ୍ଦ୍ର, ଇନ୍ଦ୍ରାଣୀ ; ଠାକୁର, ଠାକୁରାଣୀ ; ପାଠକ, ପାଠକାଣୀ ; ଗଉଡ, ଗଉଡୁଣୀ ; କେଉଟ, କେଉଟୁଣୀ ।

## ବଚନ ।

ବଚନ ଦୁଇ ପ୍ରକାର । ଏକବଚନ ଓ ବହୁବଚନ । ଏକବଚନ ଗୋଟିଏ ପଦାର୍ଥକୁ ବୁଝାଏ ; ବହୁବଚନ ଏକରୁ ଅଧିକ ପଦାର୍ଥକୁ ବୁଝାଏ । ଯଥା ; ବାଳକ, ବାଳକମାନେ । ବହୁବଚନରେ ଏ, ମାନେ, ଗଣ, ଗୁଡ଼ିକ ଓ ଗୁଡ଼ାକ ପ୍ରଭୃତି ପ୍ରତ୍ୟୟ ହୁଏ । ଯଥା ; ଲୋକେ, ଲୋକମାନେ, ପଣ୍ଡିତ-ଗଣ, ଟୋକାଗୁଡ଼ାକ, ପିଲାଗୁଡ଼ିକ । ସାଧାରଣତଃ ଏକବଚନରେ ପ୍ରତ୍ୟୟ ହୁଏ ନାହିଁ ; କୌଣସି କୌଣସି ସ୍ଥଳେ ଏ ପ୍ରତ୍ୟୟ ଦେଖାଯାଏ । ଯଥା ; ଜଣେ, ମହଣେ, ଟଙ୍କାଏ, ସେରେ ।

## ପୁରୁଷ ।

ପୁରୁଷ ତିନି ପ୍ରକାର । ପ୍ରଥମ, ଦ୍ୱିତୀୟ, ତୃତୀୟ । ଆମ୍ଭେ ପ୍ରଥମ ପୁରୁଷ, ତୁମ୍ଭେ ଦ୍ୱିତୀୟ ପୁରୁଷ ; ଏହା ଛଡ଼ା ବାକୀ ସବୁ ତୃତୀୟ ପୁରୁଷ ।

## କାରକ ।

ଯେ କରେ ସେ କର୍ତ୍ତୃକାରକ । ଯାହା ଉପରେ କ୍ରିୟାକୁ ପ୍ରୟୋଗ କରାଯାଏ, ତାହା କର୍ମକାରକ । ଯଥା; ରାମ ରାବଣକୁ ମାରିଲେ ; ଏଠାରେ ରାମ କର୍ତ୍ତୃକାରକ ଓ ରାବଣକୁ କର୍ମକାରକ । ରାମ ଶର ଦ୍ୱାରା ମାରିଲେ ; ଏଠାରେ ଶର ଦ୍ୱାରା କରଣ କାରକ । ଯାହା ଦ୍ୱାରା କ୍ରିୟା ସାଧିତ ହୁଏ, ତାହା କରଣ । ରାମ ରଥରୁ ଓହ୍ଲାଇଲେ ; ଏଠାରେ ରଥରୁ ଅପାଦାନ କାରକ । ଯାହାଠାରୁ କିଛି ବାହାରେ ସେ ଅପାଦାନ କାରକ । ଲଙ୍କାରେ ସନ୍ଧ୍ୟାସମୟରେ ରାମ ଧ୍ୟାନ କଲେ ; ଏଠାରେ ଲଙ୍କାରେ ଅଧିକରଣ କାରକ ଓ ସନ୍ଧ୍ୟାସମୟରେ ଅଧିକରଣ କାରକ । ଯେଉଁ ସ୍ଥାନରେ ବା ଯେଉଁକାଳରେ କ୍ରିୟା ଘଟେ, ତାହା ଅଧିକରଣ କାରକ । ହେ ରାମ, ଘରକୁ ଯାଅ ; ଏଠାରେ ରାମ ସମ୍ବୋଧନ ପଦ । ସମ୍ବନ୍ଧ ଓ ସମ୍ବୋଧନ ପଦକୁ କାରକ ବୋଲାଯାଏ ନାହିଁ ।

### ପ୍ରଶ୍ନ ।

ସାହିତ୍ୟ-ପୁସ୍ତକର କୌଣସି ପାଠରୁ ବିଶେଷ୍ୟ ପଦମାନ ବାଛ, ତାହାର ଲିଙ୍ଗ, ବଚନ, ପୁରୁଷ ଓ କାରକ ନିର୍ଣ୍ଣୟ କର ।

## କ୍ରିୟା ।

ବାଳକ ପଢୁଅଛି ; ଏଠାରେ ପଢୁଅଛି, ବୋଇଲେ କିଛି କାର୍ଯ୍ୟ ବା କ୍ରିୟା କରୁଅଛି । ସେ ରାଜା ଅଟନ୍ତି ; ଏଠାରେ ଅଟନ୍ତି ବୋଇଲେ ହେବା ଅଥବା ସ୍ଥିତି ବୁଝାଉ ଅଛି । ଶିଶୁ ଶୋଇଅଛି; ଏଠାରେ ଶୋଇ-ଅଛି ବୋଇଲେ ଏକପ୍ରକାର ସ୍ଥିତି ବୁଝାଉ ଅଛି ।

ଯେଉଁ ଶବ୍ଦ କୌଣସି ପ୍ରକାର କ୍ରିୟା ବା କୌଣସି ପ୍ରକାର ସ୍ଥିତି ବୁଝାଏ, ତାହାକୁ କ୍ରିୟାପଦ ବୋଲାଯାଏ ।

ଯେଉଁ କ୍ରିୟାର କର୍ମ ଅଛି ତାହାକୁ ସକର୍ମକ ଏବଂ ଯେଉଁ କ୍ରିୟାର କର୍ମ ନାହିଁ ତାହାକୁ ଅକର୍ମକ କ୍ରିୟା କହନ୍ତି । ଯଥା, ରାମ ରାବଣକୁ

ମାଇଲେ ; ପକ୍ଷୀ ଉଡ଼ୁଅଛି । ଏଠାରେ ମାଇଲେ, ସକର୍ମକ ଏବଂ ଉଡ଼ୁ-ଅଛି, ଅକର୍ମକ କ୍ରିୟା । କୌଣସି କ୍ରିୟାର ଯୋଡ଼ିଏ କର୍ମ ଥାଏ । ଯଥା, ସେ ଦରିଦ୍ରକୁ ଚାଉଳ ଦେଲେ, ଏଠାରେ ଦେଲେ କ୍ରିୟାର, ଦରିଦ୍ରକୁ ଓ ଚାଉଳ ଯୋଡ଼ିଏ କର୍ମ ।

କ୍ରିୟାପଦ ସମାପିକା ବା ଅସମାପିକା ହୁଏ । ଯେଉଁ କ୍ରିୟାରେ କଥା ଶେଷ ହୁଏ ତାହା ସମାପିକା କ୍ରିୟା । ଯଥା ; ସେ ଯାଉଅଛି ; ଏଠାରେ ଯାଉଅଛି ସମାପିକା କ୍ରିୟା । ଯେଉଁ କ୍ରିୟାରେ କଥା ଶେଷ ହୁଏ ନାହିଁ, ଶେଷ ହେବା ପାଇଁ ଅନ୍ୟ କ୍ରିୟା ଦେବାକୁ ହୁଏ, ତାହା ଅସମାପିକା କ୍ରିୟା । ଯଥା ; ରାମ ଗାଧୋଇ ପୂଜା କଲେ ; ଏଠାରେ ଗାଧୋଇ ଅସମାପିକା କ୍ରିୟା ଏବଂ ପୂଜା କଲେ ସମାପିକା କ୍ରିୟା ।

କ୍ରିୟାର ବଚନ, ପୁରୁଷ ଓ କାଳ ଅଛି ; କର୍ତ୍ତାର ବଚନ ଅନୁସାରେ ସମାପିକା କ୍ରିୟାର ବଚନ ହୁଏ । କ୍ରିୟାର ପୁରୁଷ ତିନି ପ୍ରକାର । ପ୍ରଥମ, ଦ୍ୱିତୀୟ, ଓ ତୃତୀୟ । ଆମ୍ଭେ ଏହି ପଦର କ୍ରିୟାକୁ ପ୍ରଥମ ପୁରୁଷର କ୍ରିୟା, ତୁମ୍ଭେ ଏହି ପଦର କ୍ରିୟାକୁ ଦ୍ୱିତୀୟ ପୁରୁଷର କ୍ରିୟା ବୋଲାଯାଏ । ଏହା ଛଡ଼ା ଆଉ ସମସ୍ତ ପଦର କ୍ରିୟାକୁ ତୃତୀୟ ପୁରୁଷର କ୍ରିୟା କହନ୍ତି । ଯଥା ; ଆମ୍ଭେ କରୁଅଛୁଁ, ତୁମ୍ଭେ କରୁଅଛ, ସେ କରୁଅଛନ୍ତି । ଏଠାରେ କରୁଅଛୁଁ ପ୍ରଥମ ପୁରୁଷର, କରୁଅଛ ଦ୍ୱିତୀୟ ପୁରୁଷର ଓ କରୁଅଛନ୍ତି ତୃତୀୟ ପୁରୁଷର କ୍ରିୟା ।

କ୍ରିୟାର ସମୟକୁ କାଳ କହନ୍ତି । କାଳ ତିନି ପ୍ରକାର । ବର୍ତ୍ତମାନ, ଅତୀତ ଓ ଭବିଷ୍ୟତ । ଯେଉଁ କ୍ରିୟା ହେଉଅଛି, ତାହା ବର୍ତ୍ତମାନ କାଳର କ୍ରିୟା । ଯଥା ; ରାମ ଯାଏ, ରାମ ଯାଉଅଛି । ଯେଉଁ କ୍ରିୟା ହୋଇ ଯାଇଅଛି, ତାହା ଅତୀତ କାଳର କ୍ରିୟା । ଯଥା ; ରାମଗଲା, ରାମ ଯାଇ-ଥିଲା, ରାମ ଯାଉଥିଲା । ଯେଉଁ କ୍ରିୟା ହେବ, ତାହା ଭବିଷ୍ୟତ କାଳର କ୍ରିୟା । ଯଥା ; ରାମ ଯିବ, ରାମ ଯାଇଥିବ, ରାମ ଯାଉଥିବ ।

## ପ୍ରଶ୍ନ ।

ସାହିତ୍ୟ ପୁସ୍ତକର କୌଣସି ପାଠରୁ କ୍ରିୟାପଦମାନ ବାଛି, ତାହା ସକର୍ମକ କି ଅକର୍ମକ, ସମାପିକା କି ଅସମାପିକା, ତାହାର ବଚନ, ପୁରୁଷ ଓ କାଳ ସ୍ଥିର କର ।

## ବିଶେଷଣ ।

ଭଲଲୋକ, ଏହି ଦୁଇ ଶବ୍ଦ ମଧ୍ୟରେ ଭଲ, ଏହି ଶବ୍ଦ ଲୋକର ଗୁଣ ପ୍ରକାଶ କରୁଅଛି । ସୁଶୀଳ ବାଳକ, ଏହି ଦୁଇ ଶବ୍ଦ ମଧ୍ୟରେ ସୁଶୀଳ, ଏହି ଶବ୍ଦ ବାଳକର ଗୁଣ ପ୍ରକାଶ କରୁଅଛି । ଧନୀ ଲୋକ ; ଏହି ଦୁଇ ଶବ୍ଦ ମଧ୍ୟରେ ଧନୀ, ଏହି ଶବ୍ଦ ଲୋକର ଅବସ୍ଥା ପ୍ରକାଶ କରୁଅଛି । ପୀଡ଼ିତ ବ୍ୟକ୍ତି, ଏହି ଦୁଇ ଶବ୍ଦ ମଧ୍ୟରେ ପୀଡ଼ିତ ; ଏହି ଶବ୍ଦ ବ୍ୟକ୍ତିର ଅବସ୍ଥା ପ୍ରକାଶ କରୁଅଛି । ଏକ ବା ଦୁଇ ପୁସ୍ତକ, ଏଠାରେ ଏକ ଓ ଦୁଇ, ଏହି ଉଭୟ ଶବ୍ଦ, ପୁସ୍ତକର ସଂଖ୍ୟା ପ୍ରକାଶ କରୁଅଛି । ମଧୁ ଉତ୍ତମରୂପେ ଗାଏ ; ଏଠାରେ ଉତ୍ତମରୂପେ, ଏହି ଶବ୍ଦ କ୍ରିୟାର ରୀତି ପ୍ରକାଶ କରୁ–ଅଛି । ଘୋଡ଼ା ତତ୍କ୍ଷଣାତ୍ ପଳାଇଗଲା ; ଏଠାରେ ତତ୍କ୍ଷଣାତ୍, ଏହି ଶବ୍ଦ କ୍ରିୟାର ସମୟ ପ୍ରକାଶ କରୁଅଛି ।

ଯେଉଁ ଶବ୍ଦ ବିଶେଷ୍ୟର ଗୁଣ, ଅବସ୍ଥା କିମ୍ବା ସଂଖ୍ୟା ଏବଂ କ୍ରିୟାର ରୀତି ପ୍ରଭୃତି ପ୍ରକାଶ କରେ ତାହାକୁ ବିଶେଷଣ ପଦ କୋଲାଯାଏ ।

## ସର୍ବନାମ ।

ବାଲ୍ମୀକି ବଡ଼ କବି ଥିଲେ, ସେ ରାମାୟଣ ଲେଖିଅଛନ୍ତି । ଏଠାରେ ସେ ଏହି ପଦ ବାଲ୍ମୀକି-ପରିବର୍ତ୍ତରେ ବ୍ୟବହୃତ ହୋଇଅଛି । ହେ ହରି, ତୁମ୍ଭେ ପଢ଼ । ଏଠାରେ ତୁମ୍ଭେ ଏହି ପଦ ହରି–ପରିବର୍ତ୍ତରେ ବ୍ୟବହୃତ ହୋଇଅଛି ।

ଯେଉଁ ପଦ ବିଶେଷ୍ୟପଦର-ପରିବର୍ତ୍ତରେ ବ୍ୟବହୃତ ହୁଏ, ତାହାକୁ ସର୍ବନାମପଦ କୋଲାଯାଏ । ମୁଁ, ଆମ୍ଭେ, ତୁ, ତୁମ୍ଭେ, ସେ, ଏହା, ତାହା,

ଯାହା, ଏ ଗୁଡିକ ସର୍ବନାମ ପଦ । ବିଶେଷ୍ୟ ପଦପରି, ସର୍ବନାମର ଲିଙ୍ଗ, ପୁରୁଷ ଓ କାରକ ଅଛି ।

### ଅବ୍ୟୟ ।

ହାତୀ ଓ ଘୋଡ଼ା ପହୁଞ୍ଚିଲେଣି । ଏଠାରେ ଓ, ଏହି ପଦଟି ହାତୀ, ଘୋଡ଼ା ଏହି ଦୁଇ ଶବ୍ଦ ମଧ୍ୟରେ ଥାଇଁ ସେମାନଙ୍କୁ ଯୋଗ କରୁଅଛି । ରାମ, ସୀତାଙ୍କୁ ବିବାହ କଲେ ଏବଂ ପରଶୁରାମଙ୍କୁ ଜୟ କଲେ । ଏଠାରେ ଏବଂ ଏହି ଶବ୍ଦ, ଦୁଇଟି ବାକ୍ୟକୁ ଯୋଗ କରୁଅଛି । ଯେ ଚୋରି କରେ ତାହାକୁ ଧିକ୍; ଆହା ପିଲାଟି, ବାପ ମା ଦୁହିଙ୍କୁ ହରାଇଅଛି । ଏଠାରେ ଧିକ୍ ଏହି ପଦ ଘୃଣା ବୁଝାଉଅଛି । ଆହା, ଏହି ପଦ ଦୁଃଖ ବୁଝାଉଅଛି ।

ଯେଉଁ ଶବ୍ଦ ଦୁଇଟି ବାକ୍ୟକୁ ଯୋଗ କରେ କିମ୍ବା ଦୁଃଖ, ଘୃଣା, ବିସ୍ମୟାଦି ଭାବକୁ ବୁଝାଏ, କିମ୍ବା ସମ୍ବୋଧନ ବା ଡାକିବା, ବୁଝାଏ, ତାହାକୁ ଅବ୍ୟୟ ପଦ କହନ୍ତି । ଓ, ଏବଂ, ଆଉ, ବା, କିମ୍ବା, କିନ୍ତୁ, ଆହା, ଓଃ, ଛି, ଧିକ୍, ହେ, ଅହେ, ରେ, ଲୋ ଏ ଗୁଡିକ ଅବ୍ୟୟ ପଦ ।

### ବିଶେଷଣ ।

ସାହିତ୍ୟ ପୁସ୍ତକର ପାଠମାନଙ୍କରୁ ସର୍ବନାମ ଓ ଅବ୍ୟୟ ପଦମାନ ବାଛି କହ ।

### ବ୍ୟାକରଣବିଷୟକ ପାଠ—ସନ୍ଧି ।

ଅନେକ ସ୍ଥଳରେ ଦୁଇଟି ବର୍ଣ୍ଣ ମିଶି ଯାଇ ଗୋଟିଏ ବର୍ଣ୍ଣରୂପେ ପରିଣତ ହୁଏ । ଯଥା; ଦନ ଓ ଅନ୍ତ, ଏଠାରେ ଦନର <u>ନ</u> ଓ ଅନ୍ତର <u>ଅ</u> ମିଶି <u>ନା</u> ହେଲା । ଯଥା; ଦନ + ଅନ୍ତ = ଦନାନ୍ତ । ସେହିପରି କୁଶ + ଆସନ = କୁଶାସନ; ବିଦ୍ୟା + ଆଳୟ = ବିଦ୍ୟାଳୟ; ସଦା + ଆନନ୍ଦ = ସଦାନନ୍ଦ; ଗିରି + ଇନ୍ଦ୍ର = ଗିରୀନ୍ଦ୍ର; ନର + ଇନ୍ଦ୍ର = ନରେନ୍ଦ୍ର; ପରମ + ଈଶ୍ୱର = ପରମେଶ୍ୱର; ମହା + ଈଶ୍ୱର = ମହେଶ୍ୱର; ସୂର୍ଯ୍ୟ + ଉଦୟ = ସୂର୍ଯ୍ୟୋଦୟ; ପ୍ରତି + ଅହ = ପ୍ରତ୍ୟହ; ଅତି + ଉଚ୍ଚ = ଅତ୍ୟୁଚ୍ଚ;

ଅତି + ଅନ୍ତର = ଅତ୍ୟନ୍ତର ; ପ୍ରତି + ଏକ = ପ୍ରତ୍ୟେକ ; ମଧୁ + ଆଗମନ = ମଧ୍ୱାଗମନ ; ପିତୃ + ଆଳୟ = ପିତ୍ରାଳୟ ; ଦକ୍ + ଅନ୍ତ = ଦଗନ୍ତ ; ଜଗତ୍ + ଈଶ = ଜଗଦୀଶ ; ସତ୍ + ଆଶୟ = ସଦାଶୟ ; ହୃକ୍ + ଇନ୍ଦ୍ରିୟ = ହୃଗିନ୍ଦ୍ରିୟ ; ଶରତ୍ + ଚନ୍ଦ୍ର = ଶରଚ୍ଚନ୍ଦ୍ର ; ସତ୍ + ଜନ = ସଜ୍ଜନ ; ଯାବତ୍ + ଜୀବନ = ଯାବଜ୍ଜୀବନ ; ବାକ୍ + ଦାନ = ବାଗ୍ଦାନ ; ଜଗତ୍ + ବନ୍ଧୁ = ଜଗଦ୍ବନ୍ଧୁ ; ଦକ୍ + ମଣ୍ଡଳ = ଦଙ୍ମଣ୍ଡଳ ; ଜଗତ୍ + ନାଥ = ଜଗନ୍ନାଥ ; ନିଃ + ଚନ୍ଦ୍ର = ନିଶ୍ଚନ୍ଦ୍ର ; ନିଃ + ଫଳ = ନିଷ୍ଫଳ ; ମନଃ + ଯୋଗ = ମନୋଯୋଗ ; ମନଃ + ହର = ମନୋହର ; ତେଜଃ + ମୟ = ତେଜୋମୟ ; ପୁନଃ + ଅପି = ପୁନରପି ; ପୁନଃ + ବାର = ପୁନର୍ବାର ; ନିଃ + ଆଶ୍ରୟ = ନିରାଶ୍ରୟ ; ନିଃ + ଲୋଭ = ନିର୍ଲୋଭ ; ବହିଃ + ଗତ = ବହିର୍ଗତ ।

ପ୍ରଶ୍ନ ।

ତଳେ ଯେଉଁ ସଂଯୁକ୍ତ ଶବ୍ଦମାନ ଲେଖା ଗଲା, ତାହାର ପ୍ରତ୍ୟେକଟି କେଉଁ କେଉଁ ଶବ୍ଦର ଯୋଗରେ ହୋଇଅଛି ତାହା ବାହାର କର ।

ନିତ୍ୟାନନ୍ଦ, ଅଳ୍ପାୟୁ, ଶକାବ୍ଦ, ଜଳାଶୟ, ଗିରୀଶ, କଟୂକ୍ତି, ଜ୍ୱରତେଷ୍ଣା, ଗଜେନ୍ଦ୍ର, ଭୁବନେଶ୍ୱର, ମହେନ୍ଦ୍ର, ରମେଶ, ଲମ୍ବୋଦର, ପୁରୁଷୋତ୍ତମ, ଅତ୍ୟନ୍ତ, ଇତ୍ୟାଦି, ବିଦ୍ୟାଳୟ, ବାଗୀଶ, ମନୋରଥ, ଅହୋରାତ୍ର, ନିଶ୍ଚୟ, ନିରାକାର, ଅଦ୍ୟାବଧି, ବାକ୍ୟାବଳୀ, ଦୈତ୍ୟାରି, ବନୌଷଧି, ଜିତେନ୍ଦ୍ରିୟ, ବ୍ରହ୍ମାଣ୍ଡ, ଅଭ୍ୟନ୍ତର, ପିତାମହ, ଧନୁର୍ଦ୍ଧର, ଜଗଦ୍ଧାତ୍ରୀ, ସ୍ୱେଚ୍ଛା, ମନୋରମ, ନିରୁତ୍ସାହ, ଶିରୋଧାର୍ଯ୍ୟ, ସଦଭିପ୍ରାୟ ।

ଅନ୍ୱୟ ।

ପଦ ଚ୍ଛେଦ କରି, ବାକ୍ୟରେ ଥିବା ପଦମାନଙ୍କର ପରସ୍ପର ସହିତ ସମ୍ବନ୍ଧ ବ୍ୟାଖ୍ୟା କରିବାକୁ ଅନ୍ୱୟ ବୋଲାଯାଏ । ନିମ୍ନରେ ଅନ୍ୱୟର ଗୋଟିଏ ଉଦାହରଣ ଦିଆ ଗଲା ।

"ଦୟାଳୁ ନୃପତି ମଧ୍ୟାହ୍ନରେ ରାଜକୋଷରୁ ଅନେକ ମୁଦ୍ରା ଅଣାଇ

ସଭାଗୃହରେ ବସି ପୁତ୍ରର ହସ୍ତରେ ଦୁଃଖୀମାନଙ୍କୁ, ଦୁଇ ଦୁଇଟି ମୁଦ୍ରା ଦେଇ ସେମାନଙ୍କୁ ବିଦାୟ ଦେଲେ ।"

"ଦୟାଳୁ"—ନୃପତି, ଏହି ବିଶେଷ୍ୟ ପଦର ବିଶେଷଣ ।

"ନୃପତି"—ବିଶେଷ୍ୟ, ପୁଂଲିଙ୍ଗ, ଏକବଚନ, ତୃତୀୟ ପୁରୁଷ, କର୍ତ୍ତୃ-କାରକ, ଦେଲେ ଏହି କ୍ରିୟା ସହିତ ଅନ୍ୱିତ ।

"ମଧ୍ୟାହ୍ନରେ"—ବିଶେଷ୍ୟ, କ୍ଲୀବଲିଙ୍ଗ, ଏକବଚନ, ତୃତୀୟ ପୁରୁଷ, କାଳାଧିକରଣ କାରକ ।

"ରାଜକୋଷରୁ"—ବିଶେଷ୍ୟ, କ୍ଲୀବଲିଙ୍ଗ, ଏକବଚନ, ତୃତୀୟ ପୁରୁଷ, ଅପାଦାନକାରକ ।

"ଅନେକ"—"ମୁଦ୍ରା," ଏହି ବିଶେଷ୍ୟ ପଦର ବିଶେଷଣ ।

"ମୁଦ୍ରା"—ବିଶେଷ୍ୟ, କ୍ଲୀବଲିଙ୍ଗ, ବହୁବଚନ, ତୃତୀୟ ପୁରୁଷ, କର୍ମ-କାରକ, "ଆଣାଇ" ଏହି କ୍ରିୟା ସହିତ ଅନ୍ୱିତ ।

"ଆଣାଇ"—ସକର୍ମକ, ଅସମାପିକା କ୍ରିୟା, "ମୁଦ୍ରା" ଏହି କର୍ମପଦ ସହିତ ଅନ୍ୱିତ ।

"ସଭାଗୃହରେ"—ବିଶେଷ୍ୟ, କ୍ଲୀବଲିଙ୍ଗ, ଏକବଚନ, ତୃତୀୟ ପୁରୁଷ, ସ୍ଥାନାଧିକରଣ କାରକ ।

"ବସି"—ଅକର୍ମକ, ଅସମାପିକା କ୍ରିୟା ; ରାଜା, ଏହି କର୍ତ୍ତୃପଦ ସହିତ ଅନ୍ୱିତ ।

"ପୁତ୍ରର"—ବିଶେଷ୍ୟ, ସମ୍ବନ୍ଧ ପଦ, ପୁଂଲିଙ୍ଗ, ଏକବଚନ, ତୃତୀୟ ପୁରୁଷ, "ହସ୍ତରେ" ଏହି ପଦ ସହିତ ସମ୍ବନ୍ଧ ।

"ହସ୍ତରେ"—ବିଶେଷ୍ୟ କ୍ଲୀବଲିଙ୍ଗ, ଏକବଚନ, ତୃତୀୟ ପୁରୁଷ, କରଣ କାରକ ।

"ଦୁଃଖୀମାନଙ୍କୁ"—ବିଶେଷ୍ୟ, ପୁଂଲିଙ୍ଗ, ବହୁବଚନ, ତୃତୀୟ ପୁରୁଷ, କର୍ମକାରକ ।

'ଦୁଇ, ଦୁଇଟି'—"ମୁଦ୍ରା," ଏହି ବିଶେଷ୍ୟର ସଂଖ୍ୟାବାଚକ ବିଶେଷଣ ।

"ମୁଦ୍ରା"—ବିଶେଷ୍ୟ, କ୍ଲୀବଲିଙ୍ଗ, ବହୁବଚନ, ତୃତୀୟ ପୁରୁଷ, କର୍ମକାରକ, "ଦେଇ" କ୍ରିୟା ସହିତ ଅନ୍ୱିତ ।

"ଦେଇ"—ସକର୍ମକ, ଅସମାପିକା କ୍ରିୟା, "ମୁଦ୍ରା ଏହି କର୍ମପଦ ସହିତ ଅନ୍ୱିତ ।

"ସେମାନଙ୍କୁ"—ସର୍ବନାମ, "ଦୁଃଖୀମାନଙ୍କୁ" ଏହି ବିଶେଷ୍ୟ ପଦର ପରିବର୍ତ୍ତରେ ବ୍ୟବହୃତ । ପୁଂଲିଙ୍ଗ, ବହୁବଚନ, ତୃତୀୟ ପୁରୁଷ କର୍ମକାରକ ।

"ବିଦାୟ"—ବିଶେଷ୍ୟ, କ୍ଲୀବଲିଙ୍ଗ, ଏକବଚନ, ତୃତୀୟ ପୁରୁଷ, କର୍ମକାରକ "ଦେଲେ" କ୍ରିୟା ସହିତ ଅନ୍ୱିତ ।

"ଦେଲେ"—ଦ୍ୱିକର୍ମକ କ୍ରିୟା, ଏକବଚନ, ତୃତୀୟ ପୁରୁଷ, ଅତୀତକାଳ, "ରାଜା," ଏହି କର୍ତ୍ତୃପଦ ଏବଂ "ସେମାନଙ୍କୁ" ଓ "ବିଦାୟ" ଏହି ଦୁଇ କର୍ମପଦ ସହିତ ଅନ୍ୱିତ ।

ପଦ୍ୟକୁ ପ୍ରଥମରେ ଗଦ୍ୟରେ ପରିଣତ କରି ପୂର୍ବ ପ୍ରଦର୍ଶିତ ରୀତି ଅନୁସାରେ ପ୍ରତ୍ୟେକ ପଦର ଅନ୍ୱୟ କରିବ । ଗଦ୍ୟରେ ପରିଣତ କରିବାର ଗୋଟିଏ ଉଦାହରଣ ନିମ୍ନରେ ଦିଆଗଲା ।

"ଏକାଳେ ବାଳକେ ଜାଗି ଆନନ୍ଦରେ ।
ସୁମର ହୃଦୟେ ଜଗତ ଇଶ୍ୱରେ"

ହେ ବାଳକମାନେ, ଏକାଳରେ ଆନନ୍ଦରେ ଜାଗି, ଜଗଦୀଶ୍ୱରଙ୍କୁ ହୃଦୟରେ ସ୍ମରଣ କର ।

## ବାକ୍ୟ ।

"ଶିଶୁ ଖାଉଅଛି" ଏହା ଗୋଟିଏ ଅତି କ୍ଷୁଦ୍ର ବାକ୍ୟ । ଏଠାରେ ଶିଶୁ କର୍ତ୍ତା ଏବଂ ଖାଉଅଛି କ୍ରିୟା । କର୍ତ୍ତା ଓ କ୍ରିୟା ନ ଥିଲେ କୌଣସି ବାକ୍ୟ ହୋଇ ନ ପାରେ ।

ଅଛି ।" ଏ ବାକ୍ୟରେ ଶିଶୁ କର୍ତ୍ତା, ଖାଉଅଛି କ୍ରିୟା ଅଟେ । ସକର୍ମକ କ୍ରିୟା ଥିଲେ ବାକ୍ୟ ମଧ୍ୟରେ କର୍ତ୍ତା ଛଡ଼ା କର୍ମ ପଦ ବସାଇବାକୁ ହୁଏ ।

ଯେଉଁ ବାକ୍ୟରେ ... କର୍ତ୍ତା ଏବଂ ଗୋଟିଏ କ୍ରିୟା ଥାଏ ତାହାକୁ ସରଳ ବାକ୍ୟ କହନ୍ତି । "ପର୍ବତ ମଧ୍ୟରେ ହିମାଳୟ ସବୁଠାରୁ ଉଚ୍ଚ ଅଟେ ।" ଏ ବାକ୍ୟରେ ଅନେକ ଗୁଡ଼ିଏ ପଦ ଅଛି, କିନ୍ତୁ ଏଥିରେ ଗୋଟିଏ ମାତ୍ର କର୍ତ୍ତା ହିମାଳୟ ଏବଂ ଗୋଟିଏ ମାତ୍ର କ୍ରିୟା ଅଟେ ।

"ଯେଉଁମାନେ ସତ୍ୟ କହନ୍ତି, ସେମାନଙ୍କୁ ସମସ୍ତେ ବିଶ୍ୱାସ କରନ୍ତି ।" ଏଥିରେ ଦୁଇଟି କର୍ତ୍ତା, ଯେଉଁମାନେ ଓ ସମସ୍ତେ; ଏବଂ ଦୁଇଟି କ୍ରିୟା କହନ୍ତି ଓ କରନ୍ତି । ଏ ସରଳ ବାକ୍ୟ ନୁହେଁ; ଏଠାରେ "ଯେଉଁମାନେ ସତ୍ୟ କହନ୍ତି" ଗୋଟିଏ ବାକ୍ୟ ଓ "ସେମାନଙ୍କୁ ସମସ୍ତେ ବିଶ୍ୱାସ କରନ୍ତି" ଆଉ ଗୋଟିଏ ବାକ୍ୟ ଏହି ଦୁଇ ବାକ୍ୟ ମଧ୍ୟରେ "ସେମାନଙ୍କୁ ସମସ୍ତେ ବିଶ୍ୱାସ କରନ୍ତି" ଏଇଟି ମୂଳ ବା ପ୍ରଧାନ ବାକ୍ୟ । ଅନ୍ୟଟି ମୂଳ ବାକ୍ୟ ଉପରେ ନିର୍ଭର କରୁଅଛି; ଅତଏବ ତାହା ଅଧୀନ ବା ଶାଖାବାକ୍ୟ । ଗୋଟିଏ ମୂଳବାକ୍ୟ ଓ ଗୋଟିଏ ଶାଖାବାକ୍ୟ ମିଶି ଯେଉଁ ବଡ଼ ବାକ୍ୟ ହୁଏ, ତାହାକୁ ଜଟିଳ ବାକ୍ୟ କହନ୍ତି ।

"ତୁମ୍ଭର ପିତା ଆସିବାକୁ କହି ଅଛନ୍ତି" । "ମୋର ପିତା ଆସିବାକୁ କହିଅଛନ୍ତି" । "ତାଙ୍କର ପିତା ଆସିବାକୁ କହିଅଛନ୍ତି" । ଏହି ତିନୋଟି ଯାକ ମୂଳବାକ୍ୟ । ଏ ତିନ ମୂଳବାକ୍ୟକୁ ଏକତ୍ର କଲେ "ତୁମ୍ଭର ପିତା, ମୋର ପିତା ଏବଂ ତାଙ୍କର ପିତା ଆସିବାକୁ କହିଅଛନ୍ତି", ଏହି ବଡ଼ ବାକ୍ୟ ହେବ । ଦୁଇ ବା ଅଧିକ ମୂଳବାକ୍ୟର ଯୋଗରେ ଯେଉଁ ବଡ଼ ବାକ୍ୟ ହୁଏ, ତାହାକୁ ଯୌଗିକ ବାକ୍ୟ କହନ୍ତି ।

ପ୍ରଶ୍ନ । 'ର ସଂଖ୍ୟାବାଚକ

ସାହିତ୍ୟମଞ୍ଜରୀର କୌଣସି ପାଠ ନେଇ ସେଥି ମଧ୍ୟରୁ ଉକ୍ତ, କର୍ମ-ଓ ଯୌଗିକ ବାକ୍ୟମାନ ବାଛି ଦିଅ ।

ବାକ୍ୟମାନଙ୍କର ବର୍ଦ୍ଧନ ।

"ରାଜା ପୁରସ୍କାର ଦେଲେ" —ଗୋଟିଏ କ୍ଷୁଦ୍ର ବାକ୍ୟ ଏହାକୁ ଅସମାପିକା କ୍ରିୟା ଯୋଗ କରି ବଢାଇଲେ, "ରାଜା ପରୀକ୍ଷା କରି ପୁରସ୍କାର ଦେଲେ", ଏହି ବର୍ଦ୍ଧିତ ବାକ୍ୟ ହେବ । ପୁଣି କର୍ତ୍ତାର ବିଶେଷଣ ଯୋଗ କରି ବଢାଇଲେ, "ଦୟାଳୁ ରାଜା ପରୀକ୍ଷା କରି ପୁରସ୍କାର ଦେଲେ", ଏହି ବର୍ଦ୍ଧିତ ବାକ୍ୟ ହେବ । ପୁଣି କର୍ମର ବିଶେଷଣ ଯୋଗ କରି ବଢାଇଲେ, "ଦୟାଳୁ ରାଜା ପରୀକ୍ଷା କରି ଉତ୍ତମ ପୁରସ୍କାର ଦେଲେ ଏହି ବର୍ଦ୍ଧିତ ବାକ୍ୟ ହେବ । ପୁଣି କ୍ରିୟାର ବିଶେଷଣ ଯୋଗ କରି ବଢାଇଲେ, "ଦୟାଳୁ ରାଜା ପରୀକ୍ଷା କରି ଶୀଘ୍ର ଉତ୍ତମ ପୁରସ୍କାର ଦେଲେ ।" ଆଉ ଗୋଟିଏ କରଣପଦ ଓ ତାର ବିଶେଷଣ ଯୋଗ କରି ବଢାଇଲେ, "ଦୟାଳୁ ରାଜା ପରିଶ୍ରମୀ ଛାତ୍ରମାନଙ୍କୁ ପରୀକ୍ଷା କରି ନିଜହସ୍ତରେ ଶୀଘ୍ର ଉତ୍ତମ ପୁରସ୍କାର ଦେଲେ । ଅପାଦାନକାରକ ଯୋଗ କରି ବଢାଇଲେ, "ଦୟାଳୁ ରାଜା ପରିଶ୍ରମୀ ଛାତ୍ରମାନଙ୍କୁ ପରୀକ୍ଷା କରି ନିଜ ହସ୍ତରେ ରାଜକୋଷରୁ ଶୀଘ୍ର ଉତ୍ତମ ପୁରସ୍କାର ଦେଲେ ।" ଅଧିକରଣ କାରକ ଯୋଗ କରି ବଢାଇଲେ, "ଦୟାଳୁ ରାଜା ରାଜଧାନୀରେ ପରିଶ୍ରମୀ ଛାତ୍ରମାନଙ୍କୁ ପରୀକ୍ଷା କରି ନିଜ ହସ୍ତରେ ରାଜକୋଷରୁ ଶୀଘ୍ର ଉତ୍ତମ ପୁରସ୍କାର ଦେଲେ ।" ଏହି ପ୍ରକାରେ ଗୋଟିଏ କ୍ଷୁଦ୍ର ବାକ୍ୟ ବର୍ଦ୍ଧିତ ହୋଇ କିପରି ବିସ୍ତୃତ ହେଲା, ତାହା ମନୋଯୋଗ ସହିତ ଚିନ୍ତା କରିବା ଆବଶ୍ୟକ ।

ଉପରେ ଯେଉଁ ବର୍ଦ୍ଧିତ ବାକ୍ୟ ଦିଆଗଲା, ସେଥିମଧ୍ୟରେ କେବଳ ଗୋଟିଏ କର୍ମ; ଅତଏବ ତାହା ଏତେ ବଡ ହେଲେହେଁ ସରଳ ବାକ୍ୟ

୧୦ । କର୍ତ୍ତା, କ୍ରିୟା ଓ କର୍ମ ଏବଂ ଯେଉଁ ସବୁ ପଦଦ୍ୱାରା ୭ା ହୁଏ, ସେ ଗୁଡ଼ିକ ପୃଥକ୍ କରି ଦେଖାଇବାର ନାମ ବିଶ୍ଳେଷଣ । ନିମ୍ନଲିଖିତ ଅଦର୍ଶ ଅନୁସାରେ ବାକ୍ୟ ବିଶ୍ଳେଷଣ କରିବ । ଦୟାଳୁ ରାଜା ରାଜଧାନୀରେ ଛାତ୍ରମାନଙ୍କୁ ପରୀକ୍ଷା କରି ଶୀଘ୍ର ଉତ୍ତମ ପୁରସ୍କାର ଦେଲେ ।

| କର୍ତ୍ତା | କର୍ତ୍ତାର ବିଶେଷଣ | କର୍ତ୍ତାର ସମ୍ପ୍ରସାରକ ପଦ | କ୍ରିୟା | କ୍ରିୟାର ବିଶେଷଣ | କ୍ରିୟାର ସମ୍ପ୍ରସାରକ ପଦ | କର୍ମ | କର୍ମର ବିଶେଷଣ |
|---|---|---|---|---|---|---|---|
| ରାଜା | ଦୟାଳୁ | ଛାତ୍ରମାନଙ୍କ ପରୀକ୍ଷା କରି<br>ସକର୍ମକ<br>ଅସମାପିକା କ୍ରିୟା | ଦେଲେ | ଶୀଘ୍ର | ରାଜଧାନୀରେ | ପୁରସ୍କାର | ଉତ୍ତମ |

ପ୍ରଶ୍ନ ।

ସାହିତ୍ୟ ପୁସ୍ତକର କୌଣସି ପଦ୍ୟ ବା ଗଦ୍ୟପାଠରେ ଥିବା ବାକ୍ୟମାନ ପ୍ରଦର୍ଶିତ ରୀତିରେ ବିଶ୍ଳେଷଣ କର ।

ସମାପ୍ତ ।

ORISSA MISSION PRESS, CUTTACK.